


# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

ଏ ସଂଖ୍ୟାର ଚିତ୍ରକଥା "ଇନ୍ଦ୍ରପଦରେ ମାନବ" । କିମ୍ବଦନ୍ତୀଟିର ଶେଷରେ ରାଜା ନହୁଷ ଯୁଧିଷ୍ଠିରଙ୍କୁ ଏକ ପ୍ରଶ୍ନ ପଚାରିଥିବା କଥା ଅଛି । ପ୍ରଶ୍ନଟି ହେଲା : "ପ୍ରକୃତ ବ୍ରାହ୍ମଣ କିଏ ?" ଯୁଧିଷ୍ଠିରଙ୍କ ଉତ୍ତର : "ଯିଏ ସତ୍ୟନିଷ୍ଠ, ଦୟାବାନ୍, ହିଂସାମୁକ୍ତ ଏବଂ ତପଃ ନିରତ, ସେ ବ୍ରାହ୍ମଣ ।"

*

## ଅମରବାଣୀ

ଅୟଂ ନିଜଃ ପରୋ ବେତି ଗଣନା ଲଘୁଚେତସାମ୍ ।
ଉଦାରଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍ ॥

ଇଏ ମୋର ସିଏ ପର—ଏ ଚିନ୍ତାଧାରା ସାଧାରଣ ମଣିଷର । ଯିଏ ଉଦାର, ସାରା ବିଶ୍ୱ ତାକୁ ତା' ନିଜ ପରିବାର ଭଳି ମନେ ହୁଏ ।

ବର୍ଷ : ୧୩ ଡିସେମ୍ବର ୧୯୭୯ ଅଙ୍କ : ୬





# ପ୍ରଶ୍ନୋତ୍ତର

ଦିଆଲିର ତାତ୍ପର୍ଯ୍ୟ କ'ଣ ? ଏ ଉତ୍ସବର ଉତ୍ପତ୍ତି ସମ୍ପର୍କରେ ଯେତେ କିମ୍ବଦନ୍ତୀମାନ ରହିଛି, ତହିଁରୁ ସର୍ବାପେକ୍ଷା ଅଧିକ ଗ୍ରହଣଯୋଗ୍ୟ କେଉଁଗୋଟିକ ?

ଗଙ୍ଗାଧର ଜେନା, ପିଚୁକୁଲି, ଓଡ଼ିଶା ।

ଭାରତର ସବୁ ପ୍ରାଚୀନ ଉତ୍ସବମାନଙ୍କ ମୂଳରେ ଯାହା ଉଦ୍ଦେଶ୍ୟ ରୂପେ ରହିଥାଏ, ତାହା ହେଲା ସେସବୁ ଜରିଆରେ ଜନସାଧାରଣଙ୍କୁ ଜୀବନର ମହତ୍ତର ଲକ୍ଷ୍ୟ ସମ୍ପର୍କରେ ସଚେତ କରିଦେବା, ନଚେତ୍ ଅତୀତର କୌଣସି ମହତ୍ ଘଟଣା ସ୍ମରଣ କରାଇଦେବା ।

ଦିଆଲି ହେଲା "ଦୀପାବଳି" ର ଅପଭ୍ରଂଶ । ଆଧ୍ୟାତ୍ମିକ ଦୃଷ୍ଟିରୁ ଦେଖିଲେ, ଅନ୍ଧାର ଅଜ୍ଞାନର ପ୍ରତୀକ । ତହିଁ ମଧ୍ୟରେ ଦୀପଶିଖା ସତ୍ୟ ଓ ଆଲୋକ ପାଇଁ ମାନବର ଅଭୀପ୍ସାର ପ୍ରତୀକ । ଦୀପାବଳି ଦିନ ସମସ୍ତେ ଅନ୍ତତଃ ଗୋଟାଏ ଦୀପ ଜଳାଇବା ବିଧି ରହିଛି । ସତ୍ୟ ଓ ଆଲୋକ ଯେ ଆମର ଲକ୍ଷ୍ୟ, ଏ ବିଧି ତାହାହିଁ ମନେ ପକାଇଦିଏ ।

ତେବେ ଉତ୍ସବ ମାତ୍ରେ କୌଣସି ନା କୌଣସି ଘଟଣାରୁ ଉଦ୍ଭୂତ ହୋଇଥାଏ । ଦୀପାବଳିର ପ୍ରବର୍ତ୍ତନ ସମ୍ପର୍କରେ ଯେତେ କିମ୍ବଦନ୍ତୀ ଅଛି, ତହିଁ ମଧ୍ୟରୁ ସବୁଠୁ ଅଧିକ ଗ୍ରହଣଯୋଗ୍ୟ ହେଲା : ରାମ ଯେତେବେଳେ ଲଙ୍କାବିଜୟ କରି ସୀତାଙ୍କୁ ଉଦ୍ଧାର କରି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ସେ ନଗରୀର ଆବାଳବୃଦ୍ଧବନିତା ସହସ୍ର ସହସ୍ର ଦୀପ ଜାଳି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ରାମ ଥିଲେ ସେମାନଙ୍କ ହୃଦୟର ଆଲୋକ ।

ଅନ୍ୟ ଏକ କିମ୍ବଦନ୍ତୀ କହେ, ପ୍ରାଗ୍‌ଜ୍ୟୋତିଷପୁରର ଅସୁର-ରାଜା ନରକାସୁର ଅନେକ କନ୍ୟାଙ୍କୁ ଧରିନେଇଯାଇ ବନ୍ଦିନୀ କରିଥିଲା । ଯେଉଁ ପରିବାରମାନେ କନ୍ୟାମାନଙ୍କୁ ହରାଇଥିଲେ, ସେମାନଙ୍କ ଘରେ ଦୁଃଖରେ ଆଲୁଅ ଜଳୁ ନ ଥିଲା । ଶ୍ରୀକୃଷ୍ଣ ନରକାସୁରକୁ ବଧ କରି ସେସବୁ କନ୍ୟାଙ୍କୁ ଉଦ୍ଧାର କରନ୍ତେ ସେସବୁ ଘରେ ଆଲୋକ ଜଳିଉଠିଥିଲା । ଦୀପାବଳି ତାହାର ସ୍ମୃତି ।



# ପଞ୍ଚତନ୍ତ୍ର

ସେହି ମୂର୍ଖପଣ୍ଡିତ ଚାରିଜଣ ଗଧ ଏବଂ ଓଟକୁ ଏକତ୍ର ବାନ୍ଧି ଅଡ଼ାଇବାକୁ ଚେଷ୍ଟା କଲେ । କିନ୍ତୁ ପଶୁ ଦୁଇଟି ନ ଚାଲିବାରୁ ସେମାନେ ସେ ଦୁହିଁଙ୍କୁ ବାଡ଼ିଆପିଟା କରିବାକୁ ଲାଗିଲେ । ଗଧ ରଡ଼ି ଛାଡ଼ିଲା । ଓଟ ମଧ୍ୟ ତାହାହିଁ କଲା । ଗଧର ମାଲିକ ତଥା ଓଟର ମାଲିକ ଅଳ୍ପ ଦୂରରେ ଥିଲେ । ସେ ଦୁହେଁ ଦୌଡ଼ି ଆସି ନିଜ ପଶୁମାନଙ୍କର ଦୁର୍ଦ୍ଦଶା ଦେଖି ଚାରି ପଣ୍ଡିତଙ୍କୁ ବହେ ପିଟିଦେଇଗଲେ ।

ପଣ୍ଡିତମାନେ ଦୌଡ଼ି ପଳାଇଲେ । ବହୁ ଦୂର ଯାଇ ହାଲିଆ ହୋଇ ସେମାନେ ପରସ୍ପରଙ୍କୁ ପଚାରିଲେ, "କଥା କ'ଣ ? ଆମକୁ ମାଡ଼ ଦେଲେ କାହିଁକି ?"

ଜଣେ କହିଲା, "ଆରେ ଭାଇ, ଶାସ୍ତ୍ରରେ ତ ସ୍ପଷ୍ଟ ଲେଖା ଅଛି ଯେ ମୂର୍ଖମାନେ ପଣ୍ଡିତଙ୍କ ବ୍ୟବହାର ବୁଝିପାରନ୍ତି ନାହିଁ । ସେ ଦୁଇ ମୂର୍ଖ ଆମ କାର୍ଯ୍ୟର ମର୍ଯ୍ୟାଦା ବୁଝନ୍ତେ କିପରି ?"

ଚାରିହେଁ ପୁଣି ଅଗ୍ରସର ହେଲେ । କିଛି ଦୂରରେ ପଡ଼ିଲା ନଈ । ଜଣେ ପଣ୍ଡିତ କହିଲା, "ଶାସ୍ତ୍ର କହେ, ଜ୍ଞାନ ଭବସାଗର ପାରି କରାଏ । ଇଏ ତ ସାମାନ୍ୟ ନଈ ।" ଏହା କହି ସେ ପାଣିକୁ ଡେଇଁପଡ଼ି କାଦୁଅରେ ପୋତି ହୋଇଯିବାକୁ ଲାଗିଲା ।

ତା'ର ସେ ଅବସ୍ଥା ଦେଖି ତା'ର ଜଣେ ସାଥୀ କହିଲା, "ଶାସ୍ତ୍ର କହୁଛି, ସର୍ବନାଶେ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜତି ପଣ୍ଡିତଃ ! ଆମେମାନେ ଏହାଙ୍କର ମୁଣ୍ଡଅଂଶଟକ ଅନ୍ତତଃ ରକ୍ଷା କରିବା ।" ଏହା କହି ସେ ବୁଡ଼ିଯାଉଥିବା ପଣ୍ଡିତର ମୁଣ୍ଡଟି କାଟିନେଲା ।

କିନ୍ତୁ ମୁଣ୍ଡକୁ ନେଇ ସେମାନେ ବା କରିବେ



କ'ଣ ? ତାକୁ ନଈ ଧାରରେ ପକାଇଦେଇ ସେମାନେ ପୁଣି ଆଗକୁ ଚାଲିଲେ ।

ଗୋଟାଏ ଗାଁରେ ପହଞ୍ଚି ସେମାନେ ନିଜ ନିଜକୁ ପଣ୍ଡିତ ବୋଲି ପରିଚୟ ଦିଅନ୍ତେ ତିନି-ଜଣ ଗୃହସ୍ଥ ତିନିଜଣଙ୍କୁ ଅଲଗା ଅଲଗା ନିଜ ନିଜ ଘରକୁ ନେଇଗଲେ ।

ପ୍ରଥମ ଗୃହସ୍ଥ ତାଙ୍କ ଅତିଥିଙ୍କୁ ସିମେଇ କ୍ଷୀରି ପରଷିଲେ । ସିମେଇ ଦେଖିବାକୁ ଲମ୍ବା ସୂତା ଭଳି । ପଣ୍ଡିତର ମନେ ପଡିଗଲା : "ଦୀର୍ଘସୂତ୍ରୀ ବିନଶ୍ୟତି !" ସେ ଭାବିଲା ଦୀର୍ଘ ସୂତା ଭଳି ଏ ଖାଦ୍ୟ ଖାଇଲେ ସେ ବିନାଶ ଯିବ । ଅତଏବ ସେ ନ ଖାଇ ବାହାରିଗଲା ।

ଦ୍ୱିତୀୟ ଗୃହସ୍ଥ ତାଙ୍କ ଅତିଥିଙ୍କୁ ଗୋଟିଏ ପ୍ରକାର ପିଠା ପରଷିଲେ, ଯାହା ଆୟତନରେ ବେଶ୍ ବଡ଼ । ପଣ୍ଡିତର ମନେ ପଡ଼ିଲା, "ଅତି-ବିସ୍ତାରବିସ୍ତୀର୍ଣ୍ଣଂ ତଦ୍‌ଭବେନ୍ନ ଚିରାୟୁଷମ୍ ।" ସେ ଏହାର ଅର୍ଥ କଲା, ବେଶୀ ଓସାରିଆ ଜିନିଷ ଖାଇଲେ ଜଣେ ଚିରାୟୁ ହୋଇପାରେନା । ସେ ବି ଉଠି ଚାଲିଗଲା ।

ତୃତୀୟ ଗୃହସ୍ଥ ତାଙ୍କ ଅତିଥିକୁ ବରା ଖାଇ-ବାକୁ ଦେଲେ । ସେ ବରାଗୁଡ଼ିକ ଦେହରେ ଛିଦ୍ର ଥାଏ ।

ପଣ୍ଡିତଙ୍କର ମନେ ପଡ଼ିଲା, "ଛିଦ୍ରେଷ୍ୱନର୍ଥା ବହୁଲୀଭବନ୍ତି !" ଅର୍ଥାତ୍ ଛିଦ୍ର ଥିଲେ ବହୁ ଅନର୍ଥ ଘଟେ । ସେ ବି ଉଠିଗଲା ।

ଗାଁଲୋକେ ଶୀଘ୍ର ବୁଝିପାରିଲେ, ସେ ତିନି-ଜଣ ବହୁତ ପଢ଼ାଶୁଣା କରିଥିଲେ କ'ଣ ହେବ, ସେମାନେ ପ୍ରକୃତରେ ମୂର୍ଖ । ଏଣେ କ୍ଷୁଧାରେ କଷ୍ଟ ପାଇ, ତେଣେ ଲୋକଙ୍କ ଥଟ୍ଟା ଟାପରା ଶୁଣି ଶୁଣି ତିନି ପଣ୍ଡିତ ବିଦାୟ ହେଲେ ।

ବିଚରାମାନେ ଏତେ ପାଠ ପଢ଼ିଥିଲେ । କିନ୍ତୁ ନିଜ ନିଜ ଘରେ ପହଞ୍ଚିବା ଯାଏ ମୁଠିଏ ଲେଖାଏଁ ଖାଇବାକୁ ମଧ୍ୟ ମିଳିଲା ନାହିଁ ।

ଏ କାହାଣୀ ଶୁଣି ଅତ୍ୟନ୍ତଲୋହି କହିଲା, "ବାସ୍ତବିକ, ଯାହାର ସାଧାରଣ ବୁଦ୍ଧି ନ ଥିବ, ତା'ର ପାଣ୍ଡିତ୍ୟ ଥାଇ କୌଣସି ଲାଭ ନାହିଁ ।

ବିଗୁଡ଼ିଲେ, ବିବେକ ବିନା ମଣିଷ ଚଳିପାରିବ ନାହିଁ । ଅବଶ୍ୟ ବଡ଼ କଥା ହେଲା ଭାଗ୍ୟ । ଭାଗ୍ୟ ଭଲ ଥିଲେ ଯାହାକୁ ବଣ ଭିତରେ ମରିବାକୁ ଛାଡ଼ିଦିଆ ହୋଇଥିବ, ସେ ଗୋଡ଼ାଧନ ପାଇ ଘରକୁ ଫେରିବ । ଭାଗ୍ୟ ମନ୍ଦ ହୋଇଥିଲେ ଜଣେ କୋଟିଏ ଟଙ୍କା ପାଇ ମଧ୍ୟ ନିର୍ଧନ ହୋଇ-ଯିବ । ଭାଗ୍ୟଠାରୁ ଆହୁରି ଯାହା ବଡ଼, ତାହା ହେଲା ଭଗବାନ୍ଙ୍କ କୃପା । ମଣିଷକୁ ସବୁ ଅବସ୍ଥାରୁ ତାହା ରକ୍ଷା କରିପାରେ । ସେ ଯାହାହେଉ, ଏ ସଂସାରରେ ପୋଥି ବିଦ୍ୟାଠାରୁ ସାଧାରଣ ବାସ୍ତବ ବୁଦ୍ଧିର ମୂଲ୍ୟ ବହୁତ ଅଧିକ, ସେଥିରେ ସନ୍ଦେହ ନାହିଁ । ସହସ୍ରବୁଦ୍ଧି, ଶତବୁଦ୍ଧି ଓ ଏକବୁଦ୍ଧିର ଘଟଣାରୁ ତାହା ପ୍ରମାଣିତ ।”

“ସେ ଘଟଣାଟି କ’ଣ ?” ପଚାରିଲା ଅନ୍ତ-ଲେଖା ।

ଅନ୍ତ୍ୟନ୍ତଲେଖା ଗପିଲା : ଗୋଟିଏ ପୋଖରୀରେ ଥାନ୍ତି ସହସ୍ରବୁଦ୍ଧି ଓ ଶତବୁଦ୍ଧି ବୋଲାଉଥିବା ...ମାନଙ୍କ ସହ ଗୋଟିଏ ...ବୁଦ୍ଧି କମ୍ ...ନି



ଏତେ କମିଗଲାଣି ! ଭଲ କଥା । ମା... ବାକୁ ସୁବିଧା ହେବ । କାଲି ଆ...

ଭିନବନ୍ଧୁ ଏ କଥା ଶୁଣିଲେ... କୁଣ୍ଠିତ ଭାବରେ ପଚାରିଲା... କ’ଣ ? ବନ୍ଧୁ ସେ ପ... ସେଠାକୁ ପଳାଇବା... ଦୁଇ ଗୁଣ ଲମ୍ବରେ... ...ସନ...

ବୋଲି କିଏ କହିବ ? ଯଦି ସତକୁ ସତ ସେମାନେ ଆସି ପହଞ୍ଚିବେ, ତେବେ ସେତେ-ବେଳେ ମୋ ବୁଦ୍ଧି ପ୍ରୟୋଗ କରି ମୁଁ ସପରି-ବାରେ ନିଜକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ତୁମମାନଙ୍କୁ ବି ରକ୍ଷା କରିବି ।”

ଶତବୁଦ୍ଧି ବି କହିଲା, “ସହସ୍ରବୁଦ୍ଧି ଠିକ୍ କହୁଛି । ଆମେ ଦୁଇ ବୁଦ୍ଧିମାନ୍ ମିତ୍ର ଥାଉଁ ଥାଉଁ ତୁମେ ଭୟ କରିବା ଅନାବଶ୍ୟକ । ବୁଦ୍ଧି ଦ୍ୱାରା ନହୁଏ କ'ଣ ? ପ୍ରବଳ ଶକ୍ତିଶାଳୀ ନନ୍ଦରାଜାଙ୍କୁ ତ ବୁଦ୍ଧି ବଳରେ ଚାଣକ୍ୟ ଗାଦିଚ୍ୟୁତ କରି-ଥିଲେ ! ଏ ପୋଖରୀ ବଂଶାନୁକ୍ରମେ ଆମର । …ଆମେ ଏହାକୁ ଛାଡ଼ିବା କାହିଁକି ?”

… କହିଲା, “ଭାଇମାନେ, ତୁମ୍ଭର ବୁଦ୍ଧିକୁ …ହ । ମୁଁ କିନ୍ତୁ ହ୍ରଦକୁ ଚାଲିଲି ।” …ରାତିକ ସେହି ବାଟରେ ହ୍ରଦକୁ …ଦିନ ଧୀବରମାନେ ପହଞ୍ଚି …ଟ କରିପକାଇଲେ । ସବୁ ମାଛ ତଥା କଇଁଛ ଧରା ହେଲେ । ସହସ୍ର ବୁଦ୍ଧି ଓ ଶତବୁଦ୍ଧି ଯେତେ ଚେଷ୍ଟା କଲେ ବି ଖସି ରହିପାରିଲେ ନାହିଁ । ସେ ଦୁହେଁ ଥିଲେ ବିରାଟ ବିରାଟ ମାଛ । ଶତବୁଦ୍ଧିକୁ ଜଣେ ଧୀବର କାନ୍ଧରେ ପକାଇଲା । ସହସ୍ରବୁଦ୍ଧିକୁ ଦଉଡ଼ରେ ବାନ୍ଧି ଦୁଇଜଣ ବୋହିଲେ ।

ଏତେ ପ୍ରକାଣ୍ଡ ପ୍ରକାଣ୍ଡ ଦୁଇଟି ମାଛ ପାଇ ଧୀବରମାନଙ୍କ ଆନନ୍ଦ ଦେଖେ କିଏ ! ସେମାନେ ଉଚ୍ଚ କଣ୍ଠରେ ଗୀତ ବୋଲି ବୋଲି ନିଜ ଗାଁକୁ ଫେରିବାକୁ ପ୍ରସ୍ତୁତ ହେଲେ । ମାଛ ଦୁଇଟି ମରି ନ ଥାନ୍ତି । ମଧ୍ୟେ ମଧ୍ୟେ ଛଟପଟ କରୁ-ଥାନ୍ତି ।

ହ୍ରଦରେ ଥାଇ ବେଙ୍ଗ ସେ ଦୃଶ୍ୟ ଦେଖି ତା' ସ୍ତ୍ରୀକୁ କହିଲା, “ସହସ୍ରବୁଦ୍ଧି ଶତବୁଦ୍ଧି ବୋଲାଇ ମଧ୍ୟ ମୋର ଦୁଇ ମିତ୍ର ଏଭଳି ଦୁର୍ଦ୍ଦଶା ଭୋଗିଲେ । କିନ୍ତୁ ଏକବୁଦ୍ଧି ହୋଇ ମୁଁ ବଞ୍ଚିଗଲି । ବିଚିତ୍ର ଏ ଜଗତ ।”



# ଭଲ୍ଲୁକଘାଟିକ

[ ୧୭ ]

[ଭଲ୍ଲୁକଘାଟିକ ରାଜା ଦୁର୍ମୁଖ ସହ ମିତ୍ରତା କରି ମାୟାମର୍କଟକୁ ଧରିବାକୁ ଚେଷ୍ଟା କଲେ । ମାୟାମର୍କଟ ସେତେବେଳେ ଦୁର୍ଗ ବାହାରେ ଶତ୍ରୁପକ୍ଷର ମନ୍ତ୍ରୀ ଜୀବଗୁପ୍ତ ସହ ଥାଏ । ରବିବର୍ମା ସହ ଭଲ୍ଲୁକଘାଟିକ ତା' ଆଡ଼କୁ ଝାମ୍ପଟିଗଲେ । ରାକ୍ଷସ ଉଗ୍ରଦଣ୍ଡ ମର୍କଟ ଉପରକୁ ଗଦା ଫୋପାଡ଼ିଲା । ସଙ୍ଗେ ସଙ୍ଗେ ମର୍କଟ ଶୂନ୍ୟକୁ ଲମ୍ଫ ଦେଲା । ତା'ପରେ—]

**ମା**ୟାମର୍କଟ ଗଦା ପ୍ରହାରରୁ ବଞ୍ଚିଯାଇ ଶୂନ୍ୟକୁ ଦେଲା ଏକ ବିରାଟ ଲମ୍ଫ । ଉଗ୍ରଦଣ୍ଡ ଆହୁରି କ୍ରୁଦ୍ଧ ହେଲା । ସେ ପୁଣି ଥରେ ଗଦା ଫୋପାଡ଼ିବାକୁ ମନ କରୁଥିଲା । କିନ୍ତୁ ସେତେବେଳକୁ ଗଦାମାଡ଼ ଖାଇଥିବା ଘୋଡ଼ା ଅଚେତ୍ରା ଯାଇ ଆଉ ଗୋଟିଏ ଘୋଡ଼ା ଦେହରେ ବାଡ଼େଇ ହୋଇଗଲା । ସେ ଘୋଡ଼ା ଉପରେ ବସିଥିବା ସିପାହି ତଳକୁ ଖସିପଡ଼ିଲା । ମାୟାମର୍କଟ ଶୂନ୍ୟରୁ ଖସିଆସି ସେହି ଘୋଡ଼ାଟି ପିଠିରେ ବସିଯାଇ ନଗରୀ ଆଡ଼େ ପଳାଇବାକୁ ଲାଗିଲା ।

କିନ୍ତୁ ଉଗ୍ରଦଣ୍ଡ ଗଦା ଉଦ୍ୟତ କରି ମର୍କଟ ପଛରେ ଦୌଡ଼ିବାରୁ ମର୍କଟ ନିଜ ଘୋଡ଼ା ବୁଲାଇ ଆସି ଜୀବଗୁପ୍ତ ପାଖରେ ପହଞ୍ଚି କହିଲା, "ଜୀବଗୁପ୍ତ ! ତୁମକୁ ମନ୍ତ୍ରୀ କଲା କିଏ ? ତୁମର



ଏପର୍ଯ୍ୟନ୍ତ ଗୋଟାଏ ମଧ୍ୟ ଚାଲ୍ କିଛି କାମ ଦେବାର ଦେଖିଲି ନାହିଁ । ମୁଁ ଚାଲିଲି ଚନ୍ଦ୍ରଶୀଳା ନଗରୀ । ରାଜା ଜିତକେତୁଙ୍କୁ ସବୁ ଶୁଣାଇ ତାଙ୍କ ଦୁର୍ଗ ରକ୍ଷାର ବ୍ୟବସ୍ଥା କରିବି ।"

ମନ୍ତ୍ରୀ ଜୀବଗୁପ୍ତ ତା' ଆଡ଼କୁ ଧାବମାନ ଭଲ୍ଲୂକତାନ୍ତ୍ରିକ ଏବଂ ରବିବର୍ମାଙ୍କ ଆଡ଼କୁ ଥରେ ଦୃଷ୍ଟିପାତ କରି ଭୟରେ ଥରି ଥରି କହିଲା, "ମାୟାମର୍କଟ ! ମୋ କଥା ଟିକିଏ ଶୁଣ । ଏଡ଼େ ଭୟଙ୍କର ରାକ୍ଷସ ଓ ପରାକ୍ରମୀ ତାନ୍ତ୍ରିକ କବଳରୁ ଜିତକେତୁ କିପରି ରକ୍ଷା ପାଇବେ ବୋଲି ଭାବୁଛ ? ଚାଲ, ଆମେ ବରଂ ବେଳ ଥାଉ ଥାଉ ବଣକୁ ପଳାଇଯାଇ ଆତ୍ମରକ୍ଷା କରିବା ।"

"ମନ୍ତ୍ରୀ ମହୋଦୟ ! ଏଭଳି ପରାମର୍ଶ ଭୀରୁ ମୁହଁରେ ଶୋଭାପାଏ । ମୋର କର୍ତ୍ତବ୍ୟ ପ୍ରଥମେ ରାଜା ଜିତକେତୁକୁ ଭେଟିବା; ତା'ପରେ କିପରି ଭଲ୍ଲୂକତାନ୍ତ୍ରିକ ଓ ରବିବର୍ମାଙ୍କୁ ଶେଷ କରାଯିବ, ସେ ଉପାୟ ଚିନ୍ତା କରିବି ।" ଏହା କହି ମାୟାମର୍କଟ ନଗରୀ ଆଡ଼କୁ ଚାଲିଲା ।

ରାକ୍ଷସ ଉଗ୍ରଦଣ୍ଡ ଦାନ୍ତ କଡ଼ମଡ଼ କରି ଗର୍ଜନ କଲା, "ମନ୍ତ୍ରୀ ! ତୋ ସହ ତଥା ତୋ ମିତ୍ର ସାମନ୍ତରାଜା ସୂର୍ଯ୍ୟଭୂପତି ସହ ଆମର କୌଣସି ଶତ୍ରୁତା ନ ଥିଲା । କିନ୍ତୁ ରବିବର୍ମାଙ୍କୁ ମୃତ୍ୟୁଦଣ୍ଡ ଦେବାର ଯୋଜନା କରି ତୁମେହିଁ ନିଜର ବିପଦ ଡାକି ଆଣିଛ । ତୁମକୁ ଦଣ୍ଡ ଭୋଗିବାକୁ ପଡ଼ିବ । ଘୋଡ଼ାରୁ ଉତୁରି ଆସ ।"

ଉଗ୍ରଦଣ୍ଡ ତା' ହୁକୁମ୍ ପୁରା ଉଚ୍ଚାରଣ କରି-ସାରିବା ପୂର୍ବରୁ ମନ୍ତ୍ରୀ ଜୀବଗୁପ୍ତ ଘୋଡ଼ାର ଲଗାମ୍ ଟାଣି ତା' ପାଖରେ ଥିବା ସୈନିକମାନଙ୍କୁ କହିଲା, "ଶୁଣ ପିଲେ, ଏ ରାକ୍ଷସ ଆମକୁ କଞ୍ଚା ଚୋବାଇ ଦେବ । ପ୍ରାଣ ପ୍ରତି ଯା'ର ମମତା ଅଛି, ସେ ମୋ ପଛେ ପଛେ ଆସୁ ।" ଏହା କହି ସେ ଘୋଡ଼ା ଛୁଟାଇଦେଲା ।

ସୂର୍ଯ୍ୟଭୂପତି ଓ ସୈନ୍ୟମାନେ ବି ମନ୍ତ୍ରୀର ଅନୁସରଣ କରିବାକୁ ଲାଗିଲେ । ଉଗ୍ରଦଣ୍ଡ ଗୋଟାଏ ଘୋଡ଼ାକୁ ନିଜ ହାତ ପାଆନ୍ତାରେ ପାଇଯାଇ ତା' ପଛକୁ ଟାଣି ଦେଲା । ଘୋଡ଼ାରେ

ବସିଥିବା ସୈନିକଜଣକ ତଳେ କଚୁଡ଼ିହୋଇ ପଡ଼ିଲା । ରାକ୍ଷସ ତାକୁ ଉଠାଇ ଠିଆ କରାଇ କହିଲା, "ମନେହୁଏ ଏଡ଼େ କଚଡ଼ା ଖାଇ ମଧ୍ୟ ତୋର କିଛି ହୋଇନାହିଁ । ବଣକୁ ପଳାଇଗଲେ ତୁମ୍ଭେମାନେ ବଞ୍ଚିଯିବ ଭାବିଛ ପରା । ସେ କଥା କିନ୍ତୁ ହେବାର ନୁହେଁ ।"

ଭଲ୍ଲୂକତାନ୍ତ୍ରିକ ଓ ରତ୍ନବର୍ମା ପାଖକୁ ଆସିଗଲେ । ରତ୍ନବର୍ମା ଜତକେତୁର ପଳାତକ ସୈନ୍ୟମାନଙ୍କ ଆଡ଼କୁ ଅନାଇ କହିଲେ, "ଉଗ୍ରଦଣ୍ଡ ! ତୁମେ ମନ୍ତ୍ରୀ ଓ ତା'ର ସୈନ୍ୟଦଳକୁ ପଳାଇବା ନିମନ୍ତେ ସୁଯୋଗ ଦେଇ ଗୋଟାଏ ମାତ୍ର ସୈନିକକୁ ଜବଦ କରି କି ଲାଭ ପାଇବ ? ଜୀବଗୁପ୍ତକୁ ତୁମେ ଛାଡ଼ିଦେବା ଉଚିତ ହୋଇନାହିଁ ।"

ଭଲ୍ଲୂକତାନ୍ତ୍ରିକ ଦୀର୍ଘଶ୍ୱାସ ଛାଡ଼ି କହିଲା, "ସେ ମୂର୍ଖ ମନ୍ତ୍ରୀ ପଳାଇଗଲେ ଯାଉ, କିନ୍ତୁ ମୋ ମନ୍ତ୍ରଦଣ୍ଡ ଚୋରି କରିଥିବା ମାୟାମର୍କଟ ଥରେ ସାହସକରନ୍ତା କି !"

ରାକ୍ଷସ ଉଗ୍ରଦଣ୍ଡ ଧପ୍ କିନା ତଳେ ବସିପଡ଼ି ନିଜ ଗଦା ଦୂରକୁ ଫୋପାଡ଼ିଦେଇ କହିଲା, "ଭଲ୍ଲୂକତାନ୍ତ୍ରିକ, ମୁଁ ମାୟାମର୍କଟ ପାଖରୁ ବଡ଼ ବେଦନାଦାୟକ ଖବର ଶୁଣିଲି । ତାନ୍ତ୍ରିକ ମିଥ୍ୟାମିଶ୍ର କୁଆଡ଼େ ମୋ ଭାଇକୁ ବଧ କରିଛି । ଏକଥା କ'ଣ ବିଶ୍ୱାସଯୋଗ୍ୟ ?"



"ତୁମ ଭାଇଙ୍କ ନାମ କ'ଣ ?" ପଚାରିଲା ଭଲ୍ଲୂକତାନ୍ତ୍ରିକ ।

"ମୋ ଭାଇର ନାମ କାଳଦଣ୍ଡ । ତୁମେ ତାଙ୍କ ନାମ ଶୁଣିଥିଲ କି ? ହିମାଳୟ ମୂଳକରେ ଭଲ୍ଲୂକପାଦ ପ୍ରଦେଶରେ ସେ ରହୁଥା'ନ୍ତି ।" ଉଗ୍ରଦଣ୍ଡ, ଉତ୍ତରଦେଲା ।

ଭଲ୍ଲୂକତାନ୍ତ୍ରିକ କିଛିସମୟ ଗମ୍ଭୀର ରହି ମୁଣ୍ଡ ହଲାଇ କହିଲା, "ସେ ତାନ୍ତ୍ରିକ ମୋ ଗୁରୁଙ୍କୁ ମାରିବା ସକାଶେ ଚକ୍ରାନ୍ତ କରୁଥିଲା । ତନ୍ତ୍ର ଦ୍ୱାରା ସେ ଦଳେ ଲୋକଙ୍କୁ ବଶୀଭୂତ କରିଛି । ସେମାନେ ସର୍ବଦା ତା' କଥାରେ କାମ କରୁଥା'ନ୍ତି । ମୁଁ ଅବଶ୍ୟ କାଳଦଣ୍ଡ



ନାମକ ରାକ୍ଷସ କଥା କେବେ ଶୁଣି ନାହିଁ । ତେବେ ତୁମକୁ ଗୋଟାଏ କଥା କହିଦେଉଛି— ମାୟାମର୍କଟ କଥାରେ କଦାପି ପରତେ ଯିବ ନାହିଁ ।"

ଉଗ୍ରଦଣ୍ଡ ଉଠି ଠିଆ ହୋଇପଡ଼ି କହିଲା, "ମୋ ବିଶ୍ୱାସ, ମୋ ଭାଇ ମରିନାହିଁ । କେତେ-ବର୍ଷ ତଳେ ତାନ୍ତ୍ରିକ ଯାଇ ବ୍ରହ୍ମପୁତ୍ର କୂଳରେ ପହଞ୍ଚିବାରୁ ମୁଁ ତା' ଭୟରେ ପଳାଇ ଆସି-ଥିଲି । ତା' ମନ୍ତ୍ରତନ୍ତ୍ର ଆଗରେ ମୋ ପଥର ଗଦା କୌଣସି କାମ ଦେବ ନାହିଁ । ତୁମେ କହୁଛ ତୁମ ଗୁରୁ ମଧ୍ୟ ଜଣେ ବିଶିଷ୍ଟ ତାନ୍ତ୍ରିକ । ଭଲ କଥା । ମୁଁ ତୁମ ସହ ଯିବି । ତାଙ୍କ ସହାୟତାରେ ମିଥ୍ୟାମିଶ୍ରକୁ ଭଲ କରି ପାନେ ଦେବ ।

ଏକଥା ଶୁଣି ଭଲ୍ଲୂକତାନ୍ତ୍ରିକ ତଥା ରବିବର୍ମା ବହୁତ ଖୁସି ହେଲେ ଓ ଉଗ୍ରଦଣ୍ଡକୁ କହିଲେ, "ଆମକୁ ଯେତେ ଶୀଘ୍ର ସମ୍ଭବ ଯାଇ ଭଲ୍ଲୂକ-ପାଦ ପ୍ରଦେଶରେ ପହଞ୍ଚିବାକୁ ହେବ । କିନ୍ତୁ ତାହାଁ ପୂର୍ବରୁ ମାୟାମର୍କଟ କବଳରୁ ମନ୍ତ୍ରଦଣ୍ଡଟି ଉଦ୍ଧାର କରିବାକୁ ପଡ଼ିବ । ସଙ୍ଗେ ସଙ୍ଗେ ଦୁଷ୍ଟ ରାଜା ଜିତକେତୁକୁ ମଧ୍ୟ ଦଣ୍ଡ ଦେବାକୁ ପଡ଼ିବ ।

ପର ମୁହୂର୍ତ୍ତରେ ହାତୀ ଉପରୁ ଘାତକଭଲ୍ଲୂକ ଚିତ୍କାର କରି କହିଲା, "ଜୟ ଭୈରବଙ୍କର ଜୟ ।"

ଏହା ପରେ ସମସ୍ତେ ନଗରୀ ଅଭିମୁଖେ ଚାଲିଲେ ।

ଚନ୍ଦ୍ରଶିଳା ନଗରୀର ଦ୍ୱାରଦେଶରେ ପ୍ରଥମେ ଯାଇ ପହଞ୍ଚିଲା ଘୋଡ଼ା ଉପରେ ବସିଥିବା ମାୟାମର୍କଟ । ଦୁଇ ପ୍ରହରୀ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ଆରେ ବାପ୍ ! ଅଶ୍ୱାରୋହୀ ମର୍କଟ ଆମେ ଜୀବନରେ ଦେଖି ନ ଥିଲୁ ।"

ତରବାରି ସାହାଯ୍ୟରେ ତାହାକୁ ଅଟକାଇ ସେମାନେ ପ୍ରଶ୍ନ କଲେ, "ଆରେ ଖେଳୁଆଡ଼ ମାଙ୍କଡ଼ ! ତୁ କଥା କହି ପାରୁ କିରେ ?" ଏହା ପଚାରି ଜଣେ ପ୍ରହରୀ ମର୍କଟର ଲାଞ୍ଜ ମୋଡ଼ିବାକୁ ଉଦ୍ୟମ କଲା ।

ମାୟାମର୍କଟ ଉଚ୍ଚ କଣ୍ଠରେ ଖତେଇ ହୋଇ

କହିଲା, "ବୁଢ଼ା ପ୍ରହରୀ ! ମୋତେ ଭାବିଛୁ କ'ଣ ? ମୁଁ ମନ୍ତ୍ରବିତ୍ ଭ୍ରାନ୍ତମତି । ମୋ ସାମନାରୁ ପଳା । ନ ହେଲେ ବିପଦରେ ପଡ଼ିବୁ ।" ଏହା କହି ମର୍କଟ ଘୋଡ଼ାର ଲଗାମରେ ଟାଣ ଦେଲା ।

ଜଣେ ପ୍ରହରୀ ମାୟାମର୍କଟର ଧମକ ଖାଇ ଭୟ ଓ ବିସ୍ମୟରେ ଦୁଇ ପାହୁଣ୍ଡ ପଛକୁ ହଟି-ଗଲା । କିନ୍ତୁ ଦ୍ୱିତୀୟ ପ୍ରହରୀ ସାହସ ସହକାରେ ମର୍କଟ ଶିର ଆଡ଼କୁ ତରବାରି ଉଦ୍ୟତ କରି କହିଲା, ତୁ ମନ୍ତ୍ରବିତ୍ ହୋଇଥା ବା ତନ୍ତ୍ରବିତ୍ ହୋଇଥା, ତୋତେ ଆମ ସର୍ଦ୍ଦାର ପାଖକୁ ଯିବାକୁ ପଡ଼ିବ । ଏହା କହି ସେ ତା' ଘୋଡ଼ାର ଲଗାମ ଧରିନେବାକୁ ହାତ ବଢ଼ାଇଲା ।

କିନ୍ତୁ ମାୟାମର୍କଟ ନିଜ ମନ୍ତ୍ରଦଣ୍ଡ ସାହାଯ୍ୟରେ ପ୍ରହରୀର ତରବାରିକୁ ହଟାଇଦେଲା । ମନ୍ତ୍ରଦଣ୍ଡ ସ୍ପର୍ଶରେ ତରବାରି ବିଜୁଳି ଭଳି ଥରେ ଝଟକି ଉଠିଲା ଓ ପରେ ପରେ ଭସ୍ମରେ ପରିଣତ ହେଲା ।

ଏ ଅଦ୍ଭୁତ ଘଟଣା ଦେଖି ଦୁଇଜଣଯାକ ପ୍ରହରୀ ସ୍ତବ୍ଧ ଠିଆ ହେଲେ । "ତାନ୍ତ୍ରିକ ଗୁରୁଙ୍କର ଦୟା !" ବୋଲି ହୁଙ୍କାର ଦେଇ ମାୟାମର୍କଟ ନଗରୀର ପ୍ରବେଶପଥ ଟପି ଭିତର ପଟେ ପହଞ୍ଚିଲା ।

ସେ ପଟେ, ରାଜପଥ କଡ଼ରେ ଆଉ କେତେ-ଜଣ ପ୍ରହରୀଙ୍କ ସହ ପ୍ରହରୀ-ସର୍ଦ୍ଦାର ଗପସପ କରୁଥିଲା । ସେ ପ୍ରଥମ ଦୁଇ ପ୍ରହରୀଙ୍କ ବିସ୍ମୟ-





ଲୋକଙ୍କ ମନୋରଞ୍ଜନ କରୁଥିଲା । ବହୁ ଲୋକ ତାକୁ ଘେରି ଠିଆ ହୋଇଥିଲେ ।

ଘୋଡ଼ାସବାର ମାୟାମର୍କଟକୁ ଦେଖି ଲୋକେ ଆଶ୍ଚର୍ଯ୍ୟ ଓ ଆମୋଦିତ ହୋଇ ତାଳି ବଜାଇପାଟି କଲେ, "ଆରେ, ଆରେ, ଏ ଖେଳୁଆଡ଼ ମାଙ୍କଡ଼ ପୁଣି କାହୁଁ ଆସିଲା ?"

ବାଜିକରଟି ସେ ମାୟାମର୍କଟକୁ ଦେଖି, ଭାବିଲା, ସେ କୌଣସି ଖେଳାଳି ଦ୍ୱାରା ତାଲିମ ହୋଇଥିବା ମାଙ୍କଡ଼; ନିଜ ମାଲିକ କବଳରୁ ଖସିଆସିଛି । ତାକୁ ଧରିବା ପାଇଁ ସେ ଆଗକୁ ଦୌଡ଼ିଯାଇ ମାୟାମର୍କଟର ମୁଣ୍ଡ ଉପରକୁ ଫାଶ ଥିବା ରଜ୍ଜୁ ଫୋପାଡ଼ିଲା । ଫାଶ ଯାଇ ମାୟାମର୍କଟର କଣ୍ଠରେ ନ ବସି ଆହୁରି ତଳକୁ ଖସିଆସି ତଳେ ପଡ଼ିଲା । ତା' ହାତରୁ ମନ୍ତ୍ରଦଣ୍ଡ ଛିଟିକିଯାଇ ଟିକିଏ ଦୂରରେ ପଡ଼ିଲା ।

ବାଜିକର ନିଜ କୃତିତ୍ୱରେ ଆନନ୍ଦିତ ହୋଇ ମାୟାମର୍କଟ ପାଖକୁ ଯାଇ ତାକୁ ତା' ଦୁଇ କାନ ଧରି ଟେକି ଉଠାଇ କହିଲା, "ହଇରେ ମାଙ୍କଡ଼ ! ଶୁଣ । ବର୍ତ୍ତମାନ ମୁଁ ହେଲି ତୋ ମାଲିକ । ମୋ କଥା ଯଦି ନ ଶୁଣିବୁ, ତେବେ ତୋ ଲାଞ୍ଜରେ ନିଆଁ ଲଗାଇବି ।"

ମାୟାମର୍କଟ କ୍ରୋଧରେ ଥରିଗଲା । ଥରେ ସେ ଗୁରୁ ଆଡ଼କୁ ଅନାଇଲା ଓ କହିଲା, "ଶୁଣ ଭିଖାରି । ମୁଁ ସାଧାରଣ ମାଙ୍କଡ଼ ନୁହେଁ । ମୁଁ

ସୂଚକ କଣ୍ଠସ୍ୱର ଶୁଣି ଅନାଇଲା । ମାୟାମର୍କଟ ଘୋଡ଼ା ଛୁଟାଇ ନଗରୀ ଭିତରେ ପଶୁଥିବାର ସେ ଦେଖିଲା । ସେ ତତ୍‌କ୍ଷଣାତ୍ ତରବାରି ବାହାର କରି ତା' ଅନୁଚରମାନଙ୍କୁ ପାଟିକରି କହିଲା, "ଏ ମର୍କଟବେଶୀ ନିଶ୍ଚେ ଆମର କୌଣସି ଶତ୍ରୁରାଜାର ଗୁପ୍ତଚର । ତୁମ୍ଭେମାନେ ଏହା ପଛରେ ଦୌଡ଼ ଓ ଏହାକୁ ଧରିନିଅ ।"

ସେତେବେଳକୁ ମାୟାମର୍କଟ କ୍ଷିପ୍ର ଗତିରେ ଘୋଡ଼ା ଛୁଟାଇ ରାଜମହଲ ସାମନାରେ ପହଞ୍ଚିଗଲାଣି । ରାଜମହଲ ଆଗରେ ଥିବା ମୈଦାନ ଭିତରେ ସେତେବେଳେ ଜଣେ ବାଜିକର ଗୋଟାଏ ପୋଷା ମାଙ୍କଡ଼ ଓ ଭାଲୁ ନଚାଇ

ଅଦ୍ଭୁତ ଶକ୍ତିଶାଳୀ ତାନ୍ତ୍ରିକ । ମୁଁ ତୁମ ରାଜାଙ୍କ ସହ ଦେଖା କରିବାକୁ ଯାଉଥିଲି । ତାଙ୍କୁ ଜରୁରି ଖବର ଦେବାର ଅଛି । ତୁ ମୋତେ ଅପମାନ ଦେବାକୁ ସାହସ କଲୁ । ଜାଣିରଖ, ତୋ ମୁଣ୍ଡକାଟ କରାଇବି । କୁଆଡ଼େ ଗଲା ମୋ ମନ୍ତ୍ରଦଣ୍ଡ ।"



ବାରବୁଲା ସତରେ ଡରିଗଲା । ସେ ଦୁଇ ପାଦ ପଛକୁ ହଟିଆସିଲା । ସେ ଭାବିଲା, "ଏଇଟା ନିଶ୍ଚେ ଗୋଟାଏ ପିଶାଚ ମାଙ୍କଡ଼ । ଯାହାହେଉ, ଗୋଟାଏ ପଶୁକୁ ବଶ କରିବା ନିମନ୍ତେ ଆଉ ଗୋଟାଏ ପଶୁ ଠିକ୍ କାମ ଦେବ ।" ସେ ନିଜ ପୋଷା ଭାଲୁକୁ ମାୟ୍ନାମର୍କଟ ଆଡ଼କୁ ଯିବାକୁ ନିର୍ଦ୍ଦେଶ ଦେଲା ।

ଭାଲୁ ବିଜୁଳି ଗତିରେ ମାୟ୍ନାମର୍କଟ ଆଡ଼କୁ ମାଡ଼ିଗଲା । ତା' ବପୁ ଓ ଭୀଷଣ ଚେହେରା ଦେଖି ମାୟ୍ନାମର୍କଟ ଶଙ୍କିଗଲା । ସେ କାତର କଣ୍ଠରେ ପାଟି କରି କହିଲା, "ମୁଁ ରାଜା ଜିତକେତୁଙ୍କ ଉପକାର କରିବା ପାଇଁ ଆସିଥିଲି । ଭଲ୍ଲୁକତାନ୍ତ୍ରିକ ଦ୍ୱାରା ତାଙ୍କର ବିପଦ ଘଟିବାକୁ ଯାଉଛି । ମହାରାଜ କାହାନ୍ତି ? ମୋ ମନ୍ତ୍ରଦଣ୍ଡ ବା ଗଲା କୁଆଡ଼େ ?" ଏହା କହି ସେ ଭାଲୁର ଆକ୍ରମଣରୁ ନିଜକୁ ରକ୍ଷା କରିବା ନିମନ୍ତେ ତାକୁ ଉପର୍ଯ୍ୟୁପରି କାମୁଡ଼ିବାକୁ ଲାଗିଲା ।

ଉପସ୍ଥିତ ଲୋକେ ମାୟ୍ନାମର୍କଟ ଯାହା କହିଲା, ତାହା ଉପରେ କୌଣସି ଗୁରୁତ୍ୱ ଦେଲେ ନାହିଁ । ସେମାନେ ନିଜ ନିଜ ଭିତରେ କହୁଥାନ୍ତି, "ଆରେ ବାଃ, ଏ ମାଙ୍କଡ଼ ମଣିଷଙ୍କ ଭଳି କଥା କହିପାରେ ! କିସ ପୁଣି ଦେଖା ନ ଯାଏ ବଞ୍ଚି ରହିଥିଲେ ମହୀରେ । ସେମାନେ ବାରମ୍ବାର ହାତତାଳି ଦେଉଥାନ୍ତି ବା ସିଟି ବଜାଉଥାନ୍ତି ।

ପ୍ରହରୀ-ସର୍ଦ୍ଦାର ଘୋଡ଼ା ଛୁଟାଇ ଆସି ସେଠାରେ ପହଞ୍ଚିଗଲା ଓ କହିଲା, "ଏଠାରେ କି ନାଟ ଲାଗିଛି ?" ତା'ପରେ ସେ ବାରବୁଲାକୁ ଲକ୍ଷ୍ୟ କରି କହିଲା "ଏ ଛଦ୍ମବେଶୀ ଗୁପ୍ତଚରକୁ ଭାଲୁ ଲଗାଇ ମାରିଦେବାକୁ ତୋତେ କିଏ କହିଲା ? ଖବରଦାର୍, ତୋ ଭାଲୁକୁ ସମ୍ଭାଳ ।

ମର୍କଟ-ବେଶୀକୁ ବନ୍ଦୀ କରି ପ୍ରଥମେ ରାଜାଙ୍କ ସାମ୍ନାକୁ ନେଇଯିବାକୁ ହେବ ।"

ପ୍ରହରୀ-ସର୍ଦ୍ଦାର ଏ ନିର୍ଦ୍ଦେଶ ଦେବା ମାତ୍ରେ ବାରବୁଲ୍ ଆଗକୁ ଯାଇ ପୋଷା ଭାଲୁର ଜଞ୍ଜିର ଧରି ତାକୁ ଛଡ଼ାଇଆଣିଲା । ସେତେବେଳକୁ ଭାଲୁ କିନ୍ତୁ ମାୟାମର୍କଟକୁ ବାରମ୍ବାର ଝିଙ୍କାଝୁଣ୍ଡା ଦେଇ କାହିଲ କରିଦେଇଥାଏ । ମାୟାମର୍କଟ ଯନ୍ତ୍ରଣାରେ ଆର୍ତ୍ତନାଦ କରିବା ଅବସରରେ କହୁଥାଏ, "ଆରେ ବାବୁ, ମୁଁ ସତରେ ତୁମ ରାଜାଙ୍କ ମଙ୍ଗଳ କାମନାରେ ଯାଉଥିଲି । ମୁଁ କୌଣସି ଶତ୍ରୁପକ୍ଷର ଚର ନୁହେଁ । ମୁଁ ରାଜାଙ୍କ ହିତୈଷୀ । ତୁମେମାନେ ମୋତେ ଯେପରି କଲବଲ କଲ, ଯେପରି ଅପମାନ ଦେଲ, ଏହାର ପ୍ରାୟଶ୍ଚିତ କରିବା ନିମନ୍ତେ ପ୍ରସ୍ତୁତ ରହିଥାଅ । କେହି ଯଦି ନିଜର ମଙ୍ଗଳ ଚାହୁଁଥାଅ, ତେବେ ଯାଇ ରାଜାଙ୍କୁ ଏଠାକୁ ଡାକି ଆଣ । ଆଚ୍ଛା, ମୋ ମନ୍ତ୍ରଦଣ୍ଡ ଗଲା କୁଆଡ଼େ ?"

ପ୍ରହରୀ-ସର୍ଦ୍ଦାର ଧମକ ଦେଇ କହିଲା, "ଚୁପ୍ କର, ଗୁପ୍ତଚର ! ଆମ ରାଜା ପୁଣି ତୋ ସହିତ ସାକ୍ଷାତ କରିବା ପାଇଁ ଏଠାକୁ ଆସିବେ । ତୋ ସାହସ କମ୍ ନୁହେଁ ।"

ତା'ପରେ ପ୍ରହରୀ-ସର୍ଦ୍ଦାର ବାରବୁଲ୍ ଆଡ଼କୁ ଅନାଇ କହିଲା, "ତୋ ଭାଲୁ ଦ୍ୱାରା ଏ ଦୁଷ୍ଟକୁ କାବୁ କରି ମୋ ପଛେ ପଛେ ଆ । ରାଜ ଦରବାରରେ ଏ ଛଦ୍ମବେଶୀର ବିଚାର ହେବ ।"

ଏହା କହିସାରି ସେ ରାଜମହଲ ଆଡ଼କୁ ଅଗ୍ରସର ହେବାକୁ ଲାଗିଲା ।

ବାରବୁଲ୍ ପୁଣି ଥରେ ତା' ଭାଲୁକୁ ଇଙ୍ଗିତ ଦେବା ମାତ୍ରେ ଭାଲୁ ଯାଇ ମାୟାମର୍କଟକୁ ଧରିପକାଇ ନିଜ କାନ୍ଧରେ ପକାଇଲା ଓ ନିଜ ଖାଉନ୍ଦକୁ ଅନୁସରଣ କରି ରାଜମହଲ ଆଡ଼କୁ ଚାଲିଲା । ଲୋକେ ମଧ୍ୟ କୌତୂହଳୀ ହୋଇ ସେମାନଙ୍କ ପଛେ ପଛେ କୋଳାହଳ କରି ଚାଲିଲେ ।

ମାୟାମର୍କଟ ହାତଗୋଡ଼ ଛାଟିଆଡ଼ ବାରମ୍ବାର କହୁଥାଏ, "ଜୟ ତାନ୍ତ୍ରିକ ଗୁରୁ ! ମୋତେ ରକ୍ଷାକର । ଆରେ, ମୋ ମନ୍ତ୍ରଦଣ୍ଡ ଗଲା କୁଆଡ଼େ ?"

(କ୍ରମଶଃ)





## ପରିବର୍ତ୍ତନ

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷଟି ନିକଟକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣି କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କଲେ ।

ଚତୁର୍ଦ୍ଦିଗରୁ ଘଡ଼ଘଡ଼ ସହ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ; ବିଜୁଳି ଝଲକରେ ଦିଶିଯାଉଥାଏ ସେମାନଙ୍କର ଭୟାବହ ମୁହଁ ।

ହଠାତ୍ ଶବସ୍ଥିତ ବେତାଳ କହିଲା, "ରାଜା ! ଥରେ ଥରେ ମଣିଷର ସ୍ୱଭାବ ହଠାତ୍ ବଦଳିଯାଏ । ତା'ର କାରଣ ଅନୁସନ୍ଧାନ କରିବା ବୋଧ ହୁଏ ନିରର୍ଥକ । ତୁମ କ୍ଷେତ୍ରରେ ବି ସେହିପରି କିଛି ହୋଇଛି ବୋଲି ତୁମେ ଏ ବ୍ୟାପାରରେ ହାତ ଦେଇନାହଁ ତ ? ଆଚ୍ଛା, ଶୁଣ ଗୋଟିଏ ଗାଉଁଲି ଟୋକା ସୋମନାଥ

**ବେତାଳ କଥା**



କଥା । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।

ବେତାଳ ଗପିଲା : ସୋମନାଥ ଥିଲା ବାପାମା'ଙ୍କର ଗୋଟିଏ ବୋଲି ସନ୍ତାନ । କ୍ଷେତ କାମରେ ବାପାକୁ କୌଣସି ସାହାଯ୍ୟ ନ ଦେଇ ସେ ଏଣେତେଣେ ବୁଲୁଥାଏ । ଖାଇବା ବେଳକୁ ଖାଲି ଘରେ ତା' ଦେଖା ମିଳେ ।

ଦିନେ ତା' ବାପା ତାକୁ ବହୁତ ବକିଲେ । ସୋମନାଥ କିନ୍ତୁ ତା'ର ଭୁଲ କେଉଁଠି ତାହା ବୁଝିପାରିଲା ନାହିଁ । ମନଦୁଃଖରେ ସେ ଘର ଛାଡ଼ି ପଳାଇଗଲା ।

ଏକ ମୁହାଁ ହୋଇ ବାଟ ବୁଲୁଥାଏ । କୁଆଡ଼େ ଯିବ, ସେ କଥା ଜାଣି ନ ଥାଏ । ବାଟରେ ପଡ଼ିଲା ଗୋଟାଏ ବଣ । ସେ ତା' ଭିତର ଦେଇ ବୁଲିଥାଏ । ବଣ ମଝିରେ ଭଙ୍ଗା ମନ୍ଦିରଟାଏ । ସେଠାରେ ପହଞ୍ଚିଲା ବେଳକୁ ଭୋକରେ ସେ ଛଟପଟ ହୋଇଗଲାଣି । ଘରୁ କାହିଁକି ପଳାଇ ଆସିଲା, ବାପା କଥାରେ କାହିଁକି ରାଗିଲା, ସେସବୁ ଭାବି ସେ ସନ୍ତାପି-ହେଉଥାଏ ।

ସେତିକିବେଳେ ଗୋଟାଏ ବଳଦଗାଡ଼ି ଆସି ସେଠାରେ ରହିଲା । ଗାଡ଼ିରୁ ଜଣେ ବୁଢ଼ା ଓହ୍ଲାଇପଡ଼ି ତାକୁ କହିଲା, "ପୁଅ, ମୋର ଆଉ ବଳ ନାହିଁ । ତୁ ଟିକିଏ ଏ ବଳଦ ଯୋଡ଼ିକୁ ଖୋଲିଦେ । ଗାଡ଼ିରେ ଦାନା ଅଛି । ସେମାନଙ୍କୁ ଖାଇବାକୁ ଦେ ।"

ସୋମନାଥ ବୁଢ଼ା କଥା ମାନି ଯାହା କରିବା କଥା କଲା । କିନ୍ତୁ ବୁଢ଼ା କ୍ରମେ କାହିଲ ହୋଇପଡୁଥାଏ । ସୋମନାଥ ତା' ପାଖରେ ବସିପଡ଼ିଲା ଓ ତା' ଦେହରେ ହାତ ବୁଲାଇଦେଲା ।

ବୁଢ଼ାର ନାମ ରଙ୍ଗନାଥ । ସେ ସୋମନାଥ ଉପରେ ଖୁସୀ ହୋଇଯାଇ କହିଲା, "ପୁଅରେ ! ତୋତେ ଦେଖି ମୋ ନିଜ ପୁଅ କଥା ମୋର ମନେ ପଡ଼ୁଛି । ପିଲାବେଳରୁ ତା' ମା ମରିଯାଇଥାଏ । ମୁଁ ସର୍ବଦା ବ୍ୟସ୍ତ ରହୁଥିଲି । ତା' ଉପରେ କେହି ଆଖି ରଖିଲେ ନାହିଁ । ସେ କୁସଙ୍ଗରେ ପଡ଼ି ଯୁବା ବେଳକୁ ନାନା

ଅପରାଧ କଲା । ଶେଷକୁ ରାଜାଙ୍କ ସିପାହୀମାନେ ତାକୁ ଖୋଜିଲେ । ସେ କୁଆଡ଼େ ଯେ ପଳାଇଗଲା, ଆଉ ପତ୍ତା ମିଳିଲା ନାହିଁ ।"

"ତୁମେ ଦୁଃଖ କରନାହିଁ । ସେ ଯୁଆଡ଼େ ଥିଲେ ଥାଉ, ଭଗବାନ୍ ତା'ର ମଙ୍ଗଳ କରନ୍ତୁ । ହୁଏତ ଦିନେ ସେ ଫେରି ତୁମକୁ ଭେଟିବ ।" ସୋମନାଥ କହିଲା ।

"ଆହା, ତୋ କଥା ମୋତେ ଅମୃତ ଭଳି ଲାଗୁଛି । ତେବେ ସେ ଆଉ ଫେରିଆସି ମୋତେ ଦେଖିବ ସେ ଆଶା ମୋର ନାହିଁ । କାରଣ, ମୁଁ ବୁଝିପାରୁଛି, ମୋର ମୃତ୍ୟୁ ସମୟ ନିକଟ ହୋଇଆସିଲାଣି । ମୋର ଦୁଃଖ ମଧ୍ୟ ନାହିଁ । ମୃତ୍ୟୁ ବେଳେ ତୋତେ ଦେଖି ମନେ ହେଉଛି ତୁ ମୋର ପୁଅ ।" ବୁଢ଼ା କହିଲା ଓ କହୁ କହୁ ଚେତା ହରାଇଲା ।

ମନ୍ଦିର ପଛପଟେ ପୋଖରୀରୁ ପାଣି ଆଣି ସୋମନାଥ ବୁଢ଼ା ପାଟିରେ ଦେଲାରୁ ବୁଢ଼ା ପୁଣି ଥରେ ଆଖି ଖୋଲି କହିଲା, "ପୁଅ ! ଦିନେ ମୁଁ ଧନବାନ୍ ଲୋକ ଥିଲି । ଏବେ ମୋର ସମ୍ପତ୍ତି ବୋଇଲେ ଏ ବଳଦ ହଳକ ଓ ଶଗଡ଼ଟି । ମୋ ଯୁବା ବୟସର ମିତ୍ର ଗଙ୍ଗାଦାସଙ୍କ ଘରକୁ ଯାଉଥିଲି । କିନ୍ତୁ ପହଞ୍ଚିପାରିବି ନାହିଁ । ମୁଁ ମରିଗଲେ ତୁ ମୋତେ ଏହି ମନ୍ଦିର କଡ଼ରେ ପୋତିଦେବୁ ଓ ଗଙ୍ଗାଦାସଙ୍କୁ ଦେଖା କରି ସବୁ ଜଣାଇବୁ । ସେ ମୋ ଶ୍ରାଦ୍ଧକ୍ରିୟା କରିବାରେ ତୋତେ ସାହାଯ୍ୟ କରିବେ । ବଣ





ସେପାରି ଗାଁରେ ତାଙ୍କ ଘର ।"

ଏହା କହି ରଙ୍ଗନାଥ ସେହି ରାତିରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସକାଳ ହେବା ମାତ୍ରେ ମନ୍ଦିର ପାଖରେ ଗାତ ଖୋଳି ସୋମନାଥ ବୁଢ଼ାକୁ ସମାଧି ଦେଲା ଓ ତା'ପରେ ଗାଡ଼ି ଅଡ଼ାଇ ଚାଲିଲା ।

ବେଳ ପହରେ ବେଳକୁ ସେ ବଣ ପାରି ହେଲା । ଆଗରେ ଦେଖିଲା ଗୋଟାଏ ଫଳ ବଗିଚା । ସେତେବେଳକୁ ଭୋକରେ ତା' ହଂସା ଉଡ଼ିଲାଣି । ଗାଡ଼ି ରଖି ସେ ଦୁଇଚାରିଟା ଫଳ ତୋଳି ଖାଇପକାଇଲା ।

"ଆରେ, ମୋ ବଗିଚାରୁ ଫଳ ଚୋରି କରୁଛି କିଏ ?" ଧମକ ଦେଇ ଜଣେ ଲୋକ ଦୌଡ଼ି ଆସିଲା ।

"ବାବୁ ! କ୍ଷମା କରନ୍ତୁ । ମୁଁ ଦୁଇଦିନ ହେଲା କିଛି ଖାଇନାହିଁ । ତେଣୁ ଏପରି କରିଛି ।" ସୋମନାଥ କହିଲା ।

"ତୁମେ ଯାଉଛ କୁଆଡ଼େ ?" ଲୋକଟି ପଚାରିଲା ।

"ମୁଁ ଗଙ୍ଗାଦାସଙ୍କ ଘରକୁ ଯାଉଛି । ରାତିରେ ତାଙ୍କ ମିତ୍ର ରଙ୍ଗନାଥଙ୍କ ଦେହାନ୍ତ ହୋଇଗଲା ବଣରେ । ସେ ମୋତେ ଗଙ୍ଗାଦାସକୁ ଭେଟି ତାଙ୍କ ଶ୍ରାଦ୍ଧକର୍ମ କରାଇବାର ନିର୍ଦ୍ଦେଶ ଦେଇଥିଲେ ।" ସୋମନାଥ କହିଲା ।

"କ'ଣ ! ମୋ ମିତ୍ର ରଙ୍ଗନାଥ ଆଉ ନାହିଁ ?" ଲୋକଟି କହିଲା । ସେ ଲୋକ ଆଉ କେହି ନୁହେଁ, ଗଙ୍ଗାଦାସ । ସେ ସୋମନାଥକୁ କୁଣ୍ଢାଇପକାଇ ପୁଣି କହିଲା, "ତୋତେ ସିନା କେବେ ଦେଖିନାହିଁ, କିନ୍ତୁ ତୁ ମୋ ପୁଅ ଭଳି । ତୋ ବାପା ରଙ୍ଗନାଥ ଭଳି ବନ୍ଧୁ ମୋ ଜୀବନରେ ଆଉ କେହି ନ ଥିଲେ । ସେଥିପାଇଁ ସେ ହୁଏତ ଶେଷ ଜୀବନ ମୋ ସହ ବିତାଇବାକୁ ଆସୁଥିଲେ । ହେଲା, ମୋ ବନ୍ଧୁକୁ ସିନା ଜୀବନରେ ଆଉ ଦେଖିବି ନାହିଁ, କିନ୍ତୁ ବନ୍ଧୁ-ପୁତ୍ରକୁ ତ ପାଇଲି ! ତୋତେ ଦେଖି ମୁଁ ବନ୍ଧୁ ବିଚ୍ଛେଦର ଦୁଃଖ ପାଶୋରିଦେବି ।"

ସୋମନାଥ କ'ଣ କହିବ କହିବ ହେଉଥାଏ। କିନ୍ତୁ ଗଙ୍ଗାଦାସ ତାଙ୍କୁ ସେ ସୁଯୋଗ ଦେଲା ନାହିଁ। ବନ୍ଧୁର ମୃତ୍ୟୁ ଯୋଗୁଁ ସେ ଅତ୍ୟନ୍ତ ବିଚଳିତ ହୋଇଥାଏ। ସୋମନାଥ ଉପରେ ସେ ନିଜର ସବୁ ଆବେଗ ଢାଳିଦେଇଥାଏ।



ଗଙ୍ଗାଦାସ ସୋମନାଥକୁ ଘରକୁ ନେଇଗଲା। ତା' ସ୍ତ୍ରୀ ମଧ୍ୟ ସୋମନାଥକୁ ନିଜ ସନ୍ତାନ ଭଳି ସ୍ନେହ କଲେ।

ରଙ୍ଗନାଥର ଶ୍ରାଦ୍ଧକର୍ମ ସମାପ୍ତ ହେଲା। ପୁଅ ଯାହା କରିବା କଥା, ସୋମନାଥ ତାହା କଲା। ତା'ପରେ ସୋମନାଥ କହିଲା, "ଏଥର ମୁଁ ବିଦାୟ ନେଉଛି!"

ଗଙ୍ଗାଦାସ ତା' ହାତ ଧରିପକାଇ କହିଲା, "ବାପା, ତୁ ଯିବୁ କୁଆଡ଼େ? ମିତ୍ର ବଦଳରେ ପୁତ୍ର ପାଇଛି। ତୋତେ କ'ଣ ଛାଡ଼ିବି? ମୋର ଗୋଟାଏ ବୋଲି ଝିଅ। ତାକୁ ବାହା ହୋଇ ଏଇଠାରେ ରହିଯା।"

ସୋମନାଥ ବିରୁକ୍ତି ନ କରି ପ୍ରସ୍ତାବ ମାନି-ନେଲା। ବହୁଦିନ ପରେ ଶାଶୁଶ୍ୱଶୁରଙ୍କ ମୃତ୍ୟୁ ପରେ ଯାଇ ସେ ସପରିବାରେ ନିଜ ଗାଁକୁ ଫେରିଲା। ତାକୁ ପାଇ ବାପାମାଙ୍କ ଆନନ୍ଦ କହିଲେ ନ ସରେ।

କାହାଣୀଟି କହିସାରି ବେତାଳ ପ୍ରଶ୍ନ କଲା, "ରାଜା! ଜଣେ ବାପା ପାଖରେ ଯେଉଁ ପୁଅ ଅତ୍ୟନ୍ତ ଅଯୋଗ୍ୟ ଥିଲା, ଆଉ ଦୁଇଜଣ ବାପା ପାଖରେ ସେ ପୁଅ ଏଡ଼େ ଯୋଗ୍ୟ ବୋଲି ପ୍ରମାଣିତ ହେଲା କିପରି? ଏଭଳି ପରିବର୍ତ୍ତନ ବାସ୍ତବରେ ସମ୍ଭବପର କି? ଦ୍ୱିତୀୟତଃ ସୋମନାଥ ଯେ ରଙ୍ଗନାଥର ପୁଅ ନୁହେଁ, ଏ କଥା ସେ ଗଙ୍ଗାଦାସ ଆଗରେ କେବେ ପ୍ରକାଶ କଲା ନାହିଁ। ଏହା ଦୁଷ୍ଟବୁଦ୍ଧିର ପରିଚୟ ନୁହେଁ କି? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଜାଣିକରି ମଧ୍ୟ ନୀରବ ରହିଲେ ତୁମ ଶିର ହେବ ସ୍କନ୍ଧଚ୍ୟୁତ।"

ରାଜା ବିକ୍ରମାର୍କ ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନ କରି ଉତ୍ତର ଦେଲେ, "ସୋମନାଥ ଅଯୋଗ୍ୟ,

ଏ କଥାର ପ୍ରମାଣ ନାହିଁ । ତା' ବାପା ସହ ତା'ର ଯେ ସାମୟିକ ଭାବରେ ଟିକିଏ ଭୁଲ ବୁଝାମଣା ହୋଇଗଲା, ତା'ର ବହୁ କାରଣ ଥାଇପାରେ । ସେ ଘର ଛାଡ଼ି ଚାଲିଆସିଥିଲା ଆବେଗ ବଶତଃ । ହୁଏତ ଫେରିଯାଇଥାନ୍ତା । କିନ୍ତୁ ଘଟଣା ଚକ୍ରରେ ସେ ଅଟକିଗଲା । ରଙ୍ଗନାଥର ପୁଅ କିନ୍ତୁ ଅପରାଧ କରି ଫେରାର ହୋଇଥିଲା । ରଙ୍ଗନାଥ ବୁଝିଥିଲା, ସେ ଆଉ ପୁଅକୁ ଦେଖିବ ନାହିଁ । ତା'ର ସବୁ ସ୍ନେହ ଶେଷ ମୁହୂର୍ତ୍ତରେ ସୋମନାଥ ଉପରେ ଠୁଳ ହେବା ସ୍ୱାଭାବିକ । ଗଙ୍ଗାଦାସ ଯେ ସୋମନାଥକୁ ଖୁବ୍ ଭଲ ପାଇଲେ, ତା'ର ପ୍ରଥମ କାରଣ ସେ ତାକୁ ଫଳ ଖାଇବା ଯୋଗୁ ଗାଳି ଦେଇଥିଲେ । ନିଜ ଅନୁତାପ ତାଙ୍କୁ ସୋମନାଥ ପ୍ରତି ବିଶେଷ ଆକୃଷ୍ଟ କଲା । ତା'ଛଡ଼ା ବନ୍ଧୁପ୍ରୀତି ତ ରହିଥିଲା । ସେ ସୋମନାଥକୁ ବନ୍ଧୁର ପୁଅ ବୋଲି ଭାବୁଥିଲେ ।

"ସୋମନାଥ ଯେ ନିଜର ପ୍ରକୃତ ପରିଚୟ ଦେଲା ନାହିଁ, ତାହାର କାରଣ ତା'ର ଦୁଷ୍ଟ ବୁଦ୍ଧି ନୁହେଁ । ଘଟଣା ଏପରି ଭାବରେ ଗଡ଼ିଗଲା ଯେ ସେ ଗଙ୍ଗାଦାସଙ୍କ ଉତ୍ସାହ ଭାଙ୍ଗିଦେବାକୁ ଇଚ୍ଛା କଲା ନାହିଁ । ତା'ଛଡ଼ା, ମାନସିକ ଦୃଷ୍ଟିରୁ ସେ ତ ରଙ୍ଗନାଥର ପୁଅ ହୋଇସାରିଥିଲା । ରଙ୍ଗନାଥ ତାକୁ ପୁଅ ବୋଲି ଭାବିଥିଲା ଓ ସେ ପୁଅ ଭଳି ତା'ର ଶ୍ରାଦ୍ଧ ସମାପନ କରିଥିଲା । ସୋମନାଥର ହୃଦୟରେ ଯେ ନିଜ ବାପା ମା ପ୍ରତି ମମତା ଥିଲା, ତା'ର ପ୍ରମାଣ ଶାଶୁଶ୍ୱଶୁରଙ୍କ ମୃତ୍ୟୁ ପରେ ତା'ର ସ୍ୱଗୃହ ପ୍ରତ୍ୟାବର୍ତ୍ତନ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲିପଡ଼ିଲା । ଅଗତ୍ୟା ରାଜା ପୁଣି ଫେରିଚାଲିଲେ ।

(କଳ୍ପିତ)



# ମେଧାପରୀକ୍ଷା

ରାଜା ସୁରସେନ ପଡ଼ୋଶୀ ରାଜ୍ୟ ଦଖଲ କରି ନିଜ ରାଜ୍ୟର ପରିସର ବଢ଼ାଇବା କଥା ଚିନ୍ତା କରୁଥିଲେ । ସେ ତାଙ୍କ ଉଦ୍ଦେଶ୍ୟ ନିଜ ମନ୍ତ୍ରୀଙ୍କୁ କହିଲେ ।

"ମହାରାଜ, ପଡ଼ୋଶୀ ରାଜ୍ୟର ମନ୍ତ୍ରୀ ମେଧାବୀ ହୋଇ ନ ଥିଲେ ଆମେ ନିଶ୍ଚେ ଜିତିବା । ମେଧାବୀ ହୋଇଥିଲେ ଆମ ଯୁଦ୍ଧଯାତ୍ରା ସଫଳ ନ ହୋଇପାରେ ।" ମନ୍ତ୍ରୀ କହିଲେ ଓ ପଡ଼ୋଶୀ ରାଜଦରବାରକୁ ଜଣେ ଦୂତ ପଠାଇଲେ ।

ଦୂତ ପଡ଼ୋଶୀ ଦରବାରରେ ଯାଇ ରାଜାଙ୍କୁ କହିଲେ, "ମହାରାଜ ! ଆମ ରାଜା କହୁଛନ୍ତି, ଆପଣ ଏପରି ଜଣେ ଲୋକ ପଠାନ୍ତୁ, ଯିଏକି ମରଣ ଉପରେ ତିଷ୍ଠି ଥିବ; ଆଉ ଜଣେ ଲୋକ ପଠାନ୍ତୁ, ଯିଏ ଜୀବନ ଉପରେ ତିଷ୍ଠି ଥିବ ।"

ରାଜା ତାଙ୍କ ମନ୍ତ୍ରୀଙ୍କୁ ଜଣାଇଲେ । ମନ୍ତ୍ରୀ ତତ୍‌କ୍ଷଣାତ୍ ଜଣେ ଶ୍ରାଦ୍ଧକର୍ମ-ନିପୁଣ ପୁରୋହିତ ଓ ଜଣେ ବୈଦ୍ୟଙ୍କୁ ପଠାଇଲେ ।

ରାଜା ସୁରସେନଙ୍କ ମନ୍ତ୍ରୀ ସୁରସେନଙ୍କୁ କହିଲେ, "ଲୋକେ ମଲେ ଶ୍ରାଦ୍ଧ କରିବା ଏ ପୁରୋହିତଙ୍କ ପେଶା । ତେଣୁ ସେ ମରଣ ଉପରେ ତିଷ୍ଠିଛନ୍ତି । ଆଉ ବୈଦ୍ୟ ଲୋକଙ୍କ ଜୀବନ ନିରାପଦ ରଖି ତିଷ୍ଠିଥାନ୍ତି । ଏ କଥା ସଙ୍ଗେ ସଙ୍ଗେ ବୁଝିଥିବା ପଡ଼ୋଶୀ ମନ୍ତ୍ରୀ ଖୁବ୍ ମେଧାବୀ ।"

"ବେଶ୍, ଆମେ ପଡ଼ୋଶୀ ରାଜ୍ୟ ଆକ୍ରମଣ କରିବା ନାହିଁ ।" ରାଜା କହିଲେ ।



# ତେଲଖଣି !

ଚନ୍ଦପୁରର ଜମିଦାର ଥିଲେ ବଡ଼ ସ୍ୱାର୍ଥପର । ଯେଉଁ କାମରେ ଦୁଇପଇସା ଲାଭ ହେବ, ନଚେତ୍ ନିଜ ନାମଯଶ ବଢ଼ିବ, ସେ ସେହି କାମ କରିବେ । କିନ୍ତୁ ଖାଲି ଅନ୍ୟର ଉପକାର ପାଇଁ କିଛି କରିବେ ନାହିଁ ।

ତାଙ୍କ ଗାଁରେ ଲୋକେ ପିଇବାପାଣି ଅଭାବରୁ ବହୁତ ହଇରାଣ ହେଉଥିଲେ । ବାପା କିଛି କରିବେ ନାହିଁ ଜାଣି ଜମିଦାରଙ୍କ ପୁଅ ଗାଁ ଲୋକଙ୍କୁ ଉତ୍ସାହିତ କରି ଗୋଟାଏ କୂଅ ଖୋଳାଇଲା । କିନ୍ତୁ ବହୁତ ଖୋଳାହେଲେ ବି ପାଣି ବାହାରିଲା ନାହିଁ । ଆହୁରି ବେଶୀ ଖୋଳିଲେ ପାଣି ମିଳିବ ବୋଲି ଜମିଦାରଙ୍କ-ପୁଅ ବୁଝୁଥିଲେ । କିନ୍ତୁ ତାଙ୍କର ଆଉ ତାକତ୍ ନ ଥିଲା । ସେ ଗୋପନରେ ଶୁଖିଲା କୂଅ ଭିତରକୁ କିଛି ତେଲ ପକାଇଦେଲେ ।

ପରଦିନ ସେଥିରୁ ତେଲ ବାସନା ବାହାରୁଥିବା ଜମିଦାର ଶୁଣିଲେ । ସେଠାରେ ତେଲଖଣି ଥିବା ଆଶାରେ ଜମିଦାର ନିଜେ ଲୋକ ଲଗାଇ ଏବଂ ପାଖରେ ଠିଆ ହୋଇ କୂଅକୁ ଆହୁରି ଖୋଳାଇଲେ ! ବାହାରିଲା ପ୍ରଚୁର ପାଣି !





# ଯାଜ୍ଞବଲ୍କ୍ୟ

ଭାରତର ବିଶିଷ୍ଟ ଋଷିମାନଙ୍କ ମଧ୍ୟରେ ଅନ୍ୟତମ ହେଲେ ଯାଜ୍ଞବଲ୍କ୍ୟ । ଏହାଙ୍କ ପିତା ଦେବରାତ ଶିବଙ୍କୁ ଆରାଧନା କରି ଏବଂ ଯଜ୍ଞ କରି ଶିବଙ୍କ ବିଭୂତି ରୂପେ ଏହାଙ୍କୁ ସନ୍ତାନ ସ୍ୱରୂପ ଲାଭ କରିଥିଲେ ।

ଯାଜ୍ଞବଲ୍କ୍ୟ ବୈଶମ୍ପାୟନ ଋଷିଙ୍କ ନିକଟରେ ବେଦ ଅଧ୍ୟୟନ କରୁଥିଲେ । ଥରେ ବୈଶମ୍ପାୟନ ଓ ତାଙ୍କର କେତେଜଣ ସାଥୀ ଋଷିମାନଙ୍କ ମଧ୍ୟରେ ଗୋଟିଏ ବାଜି ଲଗିଲା । ସାତଦିନ ଭିତରେ ମେରୁପର୍ବତ ପର୍ଯ୍ୟନ୍ତ ଯାଇ ପୁଣି ଫେରିଆସିବା ସମ୍ଭବପର କି ? ବୈଶମ୍ପାୟନ କହିଲେ ସମ୍ଭବ । ଅନ୍ୟମାନେ କହିଲେ ସମ୍ଭବ ନୁହେଁ । ସ୍ଥିର ହେଲା, ବୈଶମ୍ପାୟନ ମେରୁ ପର୍ବତ ଯାଏ ଯାଇ ଫେରିଆସି ତାହା ସମ୍ଭବ ବୋଲି ପ୍ରମାଣ କରିଦେବେ । ଯଦି ସାତଦିନ ଭିତରେ ଫେରି ଆସି ନ ପାରିବେ, ତେବେ ବ୍ରହ୍ମହତ୍ୟା ପାପ ତୁଲ୍ୟ ପାପ କଲେ ବୋଲି ଜାଣିବାକୁ ହେବ ।

ବୈଶମ୍ପାୟନ ସାତଦିନ ଭିତରେ ଫେରି ପାରିଲେ ନାହିଁ । ଫଳରେ ସର୍ତ୍ତ ଅନୁସାରେ ତାଙ୍କୁ ପାପ ଭାର ନେବାକୁ ପଡ଼ିଲା । ସେ ପାପରୁ ଉଦ୍ଧାର ପାଇବା ନିମନ୍ତେ ସେ ତାଙ୍କ ଶିଷ୍ୟମାନଙ୍କୁ ଗୋଟିଏ ବ୍ରତ କରିବାକୁ କହିଲେ । ଯାଜ୍ଞବଲ୍କ୍ୟ କହିଲେ, "ଗୁରୁଦେବ ! ସମସ୍ତେ ବ୍ରତ କରିବା ଦରକାର ନାହିଁ । ମୋର ଶକ୍ତି ଅଛି, ମୁଁ ଏକା ବ୍ରତ କରି ଆପଣଙ୍କୁ ପାପମୁକ୍ତ କରିବି ।"

ବୈଶମ୍ପାୟନଙ୍କର ମନେ ହେଲା ଯାଜ୍ଞବଲ୍କ୍ୟ ଏପରି କହିବା ଗର୍ବର ପରିଚୟକ । ସେ ବିରକ୍ତ ହୋଇ କହିଲେ, "ତୁମେ ମୋ ଶିଷ୍ୟ ହେବାର

ଅଯୋଗ୍ୟ । ମୋଠାରୁ ଯେତକ ବିଦ୍ୟା ଶିଖିଛ, ତାହା ତୁମେ ଫେରାଇଦେବା ଉଚିତ ।” ତୁରନ୍ତ ଯାଜ୍ଞବଲ୍କ୍ୟ ତତ୍କ୍ଷଣାତ୍ ବୈଶମ୍ପାୟନଙ୍କଠାରୁ ଶିଖିଥିବା ବିଦ୍ୟାତକ ବାନ୍ତି କରିପକାଇଲେ । ପାଖରେ ଥିବା ଋଷି ଓ ବିଦ୍ୟାର୍ଥୀମାନେ ତିତ୍ତିର ପକ୍ଷୀଙ୍କ ରୂପ ଧାରଣ କରି ସେ ବିଦ୍ୟାତକ ଗଳାଧଃକରଣ କଲେ । ତା’ପରେ ସେମାନେ ସେ ବିଦ୍ୟା ପୁନଃପ୍ରକାଶ କରନ୍ତେ ତା’ର ନାମ ହେଲା ତୈତ୍ତିରୀୟ ଉପନିଷଦ୍ ।

ପରେ ଯାଜ୍ଞବଲ୍କ୍ୟ ସୂର୍ଯ୍ୟଙ୍କୁ ଆରାଧନା ଦ୍ୱାରା ତୁଷ୍ଟ କରି ବହୁ ଅଜ୍ଞାତ ବିଦ୍ୟାର ଅଧିକାରୀ ହେଲେ । ତାଙ୍କ ପ୍ରଣୀତ ଗ୍ରନ୍ଥର ନାମ ଯାଜ୍ଞବଲ୍କ୍ୟ ସଂହିତା । ସେ ଶତପଥବ୍ରାହ୍ମଣ ଓ ବୃହଦାରଣ୍ୟ ମଧ୍ୟ ସମ୍ପାଦନା କରିଥିଲେ । ସେ ବ୍ୟାସଦେବଙ୍କ ଶିଷ୍ୟ ମଧ୍ୟ ହୋଇଥିଲେ ।

ଥରେ ରାଜା ଜନକ ଦେଶର ଶ୍ରେଷ୍ଠ ବ୍ରହ୍ମଜ୍ଞଙ୍କୁ ବହୁ ଗୋଧନ ପୁରସ୍କାର ରୂପେ ଦେବାକୁ ମନସ୍ଥ କଲେ । ତଦନୁସାରେ ସେ ଦେଶର ମୁନିଋଷି ଓ ପଣ୍ଡିତଗଣଙ୍କର ଏକ ସଭା ଆହ୍ୱାନ କଲେ । ସେ ସଭାରେ ଯାଜ୍ଞବଲ୍କ୍ୟ ମଧ୍ୟ ଉପସ୍ଥିତ ରହିଥିଲେ । ଅନ୍ୟମାନଙ୍କ ସହ ତାଙ୍କର ଜ୍ଞାନଚର୍ଚ୍ଚା ଓ ବିତର୍କ ହେଲା । ଯାଜ୍ଞବଲ୍କ୍ୟହିଁ ନିଜକୁ ଶ୍ରେଷ୍ଠ ବୋଲି ପ୍ରମାଣିତ କରି ସେ ପୁରସ୍କାର ଲାଭ କରିଥିଲେ ।

ଯାଜ୍ଞବଲ୍କ୍ୟଙ୍କର ଦୁଇ ପତ୍ନୀ ଥିଲେ । ସେମାନଙ୍କ ନାମ ମୈତ୍ରେୟୀ ଓ କାତ୍ୟାୟିନୀ । ମୈତ୍ରେୟୀ ନିଜେ ଥିଲେ ଜିଜ୍ଞାସୁ । ତେଣୁ ଯାଜ୍ଞବଲ୍କ୍ୟ ତାଙ୍କୁ ବହୁ ଦାର୍ଶନିକ ତତ୍ତ୍ୱ ଶିକ୍ଷା ଦେଇଥିଲେ ।

ପ୍ରାଚୀନ ଭାରତର ମହୀୟସୀ ମହିଳାମାନଙ୍କ ମଧ୍ୟରେ ମୈତ୍ରେୟୀ ଏକ ବିଶେଷ ସ୍ଥାନ ଅଧିକାର କରନ୍ତି । ଗାର୍ଗୀ, ବିଶ୍ୱବାରା ପ୍ରମୁଖ ଜ୍ଞାନବତୀ ମହିଳାମାନଙ୍କ ସହ ତାଙ୍କ ନାମ ମଧ୍ୟ ଉଲ୍ଲେଖ କରାଯାଏ ।



# ଇନ୍ଦ୍ରପଦରେ ମାନବ



## ଭରତ-କାହାଣୀ

ଥରେ ଇନ୍ଦ୍ର ଭୀଷଣ ବିଷାଦଗ୍ରସ୍ତ ହୋଇ ଗୋଟିଏ ସରୋବର ଭିତରେ ଯାଇ ବସିରହିଲେ । ସେ ଅର୍ଦ୍ଧଚେତନ ରହି ଦିନଯାପନ କରୁଥାଆନ୍ତି । ଦେବଗଣ ଭାଳିହେଲେ : ସ୍ୱର୍ଗରାଜ୍ୟ ଶାସନ କରିବ କିଏ ?

ପୃଥିବୀରେ ସେତେବେଳେ ରାଜୁତି କରୁଥିଲେ ନହୁଷ ନାମକ ରାଜା । ମହତ୍ ଗୁଣରେ ତାଙ୍କ ତୁଲ୍ୟ କେହି ନ ଥିଲେ । ପୁଣି ସେ ଥିଲେ ପ୍ରବଳ ପରାକ୍ରମୀ ବୀର । ବୃତ୍ର ନାମକ ରାକ୍ଷସକୁ ସେ ବଧ କରିଥିଲେ । ତେବେ ସେ ଧ୍ୟାନ ଓ ତପରେ ଅଧିକ ସମୟ ବିତାଉଥିଲେ ।







ସ୍ୱର୍ଗର ଇନ୍ଦ୍ରପଦ ବେଶୀଦିନ ପାଇଁ ଖାଲି ପକାଇ ରଖିବା ସମ୍ଭବ ହୋଇ ନ ଥାନ୍ତା । ଦେବ ଓ ଋଷିଗଣ ନିଜ ନିଜ ଭିତରେ ପରାମର୍ଶ କରି ଦେବୋପମ ରାଜା ନହୁଷଙ୍କୁ ସେ ପଦରେ ଅଧିଷ୍ଠିତ କରିବାର ସିଦ୍ଧାନ୍ତ ନେଲେ ।



ରାଜା ନହୁଷ ପ୍ରଥମେ ମଙ୍ଗ୍ ନ ଥିଲେ। କିନ୍ତୁ ଦେବ ଓ ଋଷିଗଣ ସେମାନଙ୍କ ପ୍ରସ୍ତାବ ଗ୍ରହଣ କରିବାକୁ ତାଙ୍କୁ ବାଧ କଲେ। ସେ ଯାଇ ସ୍ୱର୍ଗରେ ଇନ୍ଦ୍ରଙ୍କ ସିଂହାସନରେ ବସିଲେ। ମର୍ତ୍ତ୍ୟର ଜଣେ ମାନବ ହେଲା ଦେବରାଜ!



ପ୍ରଥମେ ପ୍ରଥମେ ନହୁଷ ନମ୍ର ଭାବରେ ନିଜ କର୍ତ୍ତବ୍ୟ ତୁଲାଇ ଚାଲିଲେ। କିନ୍ତୁ କାଳକ୍ରମେ ସେ ହେଲେ ଗର୍ବର ଶିକାର। ଦିନେ ହଠାତ୍ ଇନ୍ଦ୍ରଙ୍କ ରାଣୀ ଶଚିଦେବୀଙ୍କ ଉପରେ ତାଙ୍କ ଆଖି ପଡ଼ିଗଲା।



ସେ ତାଙ୍କ ଦରବାରକୁ ଆସି ଦେବତାମାନଙ୍କୁ ଡକାଇ କହିଲେ, ଯେ ଯେତେବେଳେ ଇନ୍ଦ୍ରପଦର ଅଧିକାରୀ, ଇନ୍ଦ୍ରାଣୀ ତାଙ୍କର ରାଣୀ ହେବା ବିଧେୟ! ଦେବଲୋକେ ଏହା ଶୁଣି ଅସ୍ୱସ୍ତି ଅନୁଭବ କଲେ।

ନହୁଷଙ୍କର ଖିଆଲ କଥା ଶୁଣିଲେ ଶଚୀଦେବୀ । ସେ ଅପମାନ ଅନୁଭବ କରି ଯାଇ ପହଞ୍ଚିଲେ ଦେବଗୁରୁ ବୃହସ୍ପତିଙ୍କ ପାଖରେ । ଗୁରୁଙ୍କୁ ନିଜ ମାନସିକ ଯାତନା ଜଣାଇଲେ ।







ଗୁରୁଙ୍କ ଉପଦେଶ କ୍ରମେ ଶଚୀଦେବୀ ନହୁଷଙ୍କ ପାଖକୁ ଏହି ଖବର ପଠାଇଲେ କି ସେ ନହୁଷଙ୍କ ପ୍ରସ୍ତାବ ଗ୍ରହଣ କରିବେ ଗୋଟିଏ ସର୍ତ୍ତରେ : ସପ୍ତର୍ଷି-ବାହିତ ସବାରିରେ ନହୁଷଙ୍କୁ ତାଙ୍କ ପାଖକୁ ଆସିବାକୁ ହେବ । ନହୁଷ ସପ୍ତର୍ଷିଙ୍କୁ ଆଣି ସବାରି ବୁହାଇଲେ ।

ସପ୍ତର୍ଷିଙ୍କ ମଧ୍ୟରେ ଥିଲେ ଅଗସ୍ତ୍ୟ । ସେ ଥିଲେ ଅପେକ୍ଷାକୃତ ଖର୍ବାକୃତି । ଅନ୍ୟମାନଙ୍କ ତୁଳନାରେ ତାଙ୍କ ଗତି ମଧ୍ୟ ଥିଲା ମନ୍ଥର । ନହୁଷ ଗନ୍ତବ୍ୟ ସ୍ଥଳୀରେ ଶୀଘ୍ର ପହଞ୍ଚିପାରୁ ନ ଥିବାରୁ ଅଧୈର୍ଯ୍ୟ ହୋଇ ଅଗସ୍ତ୍ୟଙ୍କୁ ପଦାଘାତ କଲେ ।





ସେ ଯାଏ ଶାନ୍ତ ଓ ସ୍ଥିର ଥିବା ଅଗସ୍ତ୍ୟ କ୍ରୁଦ୍ଧ ହୋଇ ଦେଲେ ଏହି ଅଭିଶାପ : ନହୁଷ ଯେତେବେଳେ ଏତେ ଅହଙ୍କାରୀ ଓ ଉଦ୍ଧତ ଭାବରେ ନିଜ ପାଦର ବ୍ୟବହାର କରନ୍ତି, ସେ ପାଦସ୍ପନ କୌଣସି ସାପରେ ପରିଣତ ହେବା ଦରକାର । ସଙ୍ଗେ ସଙ୍ଗେ ସର୍ପରେ ପରିଣତ ହୋଇ ନହୁଷ ସ୍ୱର୍ଗରୁ ଖସିପଡ଼ିଲେ ।

ତେବେ କ୍ଷମାଶୀଳ ଅଗସ୍ତ୍ୟ କହିଲେ କି ଭବିଷ୍ୟତରେ ସେ ଜଣେ ମହାପୁରୁଷଙ୍କ ହସ୍ତକ୍ଷେପ ଫଳରେ ଶାପମୁକ୍ତ ହେବେ । ବହୁଦିନ ବିତିଗଲା । ପାଣ୍ଡବମାନେ ବନ-ବାସ କରୁଥିବା କାଳରେ ଦିନେ ନହୁଷ-ସର୍ପ ଭୀମଙ୍କୁ ଗୁଡ଼ାଇ ଧରିଲା ।





ଯୁଧିଷ୍ଠିର ଘଟଣାସ୍ଥଳରେ ପହଞ୍ଚି ଭୀମଙ୍କୁ ପାଶମୁକ୍ତ କରିବା ନିମନ୍ତେ ସର୍ପରୂପୀ ନହୁଷଙ୍କୁ ନିର୍ଦ୍ଦେଶ ଦିଅନ୍ତେ ଯୁଧିଷ୍ଠିର ତାଙ୍କ ପ୍ରଶ୍ନର ଉତ୍ତର ଦେଲେ ସେ ତାହା କରିବେ ବୋଲି କହିଲେ । ଯୁଧିଷ୍ଠିର ପ୍ରଶ୍ନର ଯଥାର୍ଥ ଉତ୍ତର ଦେବାରୁ ନହୁଷ ଭୀମଙ୍କୁ ମୁକ୍ତ ଦେବା ସଙ୍ଗେ ସଙ୍ଗେ ନିଜେ ସର୍ପଦଶାରୁ ମୁକ୍ତି ଲାଭ କଲେ ।



# ବୈଶ୍ୟ ରାଜକୁମାର

ନାଭାଗ ଥିଲେ ରାଜା ଧୃଷ୍ଟଙ୍କ ପୁତ୍ର । ସେ ଜଣେ ବୈଶ୍ୟକନ୍ୟାଙ୍କୁ ବିବାହ କରିବାକୁ ଇଚ୍ଛା କଲେ । ସେ କନ୍ୟାଙ୍କ ନାମ ସୁପ୍ରଭା ।

ସେ ଯାଇ ସୁପ୍ରଭାଙ୍କ ପିତାଙ୍କ ଆଗରେ ନିଜ ପ୍ରସ୍ତାବ ଉପସ୍ଥାପନ କରିବାରୁ କନ୍ୟା-ପିତା କହିଲେ, "ତୁମେ କ୍ଷତ୍ରିୟ ରାଜପୁତ୍ର । ବୈଶ୍ୟ କନ୍ୟା ବିବାହ କରିବା ତୁମ ପକ୍ଷରେ ରୀତିବିରୁଦ୍ଧ କାର୍ଯ୍ୟ ହେବ ।"

କିନ୍ତୁ ରାଜକୁମାର ନାଭାଗ ତଥାପି ହଠ କରିବାରୁ କନ୍ୟାପିତା କହିଲେ, "ରାଜା ଧୃଷ୍ଟ ଯେପରି ମୋର ରାଜା, ସେହିପରି ତୁମ୍ଭର ବି ରାଜା । ତେଣୁ ତାଙ୍କୁ ସବୁ କୁହାଯାଉ । ସେ କ'ଣ ରାୟ ଦେବେ ଦେଖନ୍ତୁ ।"

ଦୁହେଁ ଯାଇ ରାଜା ଧୃଷ୍ଟଙ୍କୁ ସବୁ କହିଲେ । କିନ୍ତୁ ଧୃଷ୍ଟ ଏ ପ୍ରସ୍ତାବ ସମର୍ଥନ କଲେ ନାହିଁ । ରାଜକୁମାର ନାଭାଗ ଦୁଃଖ ପାଇଲେ, କିନ୍ତୁ ହତାଶ ହେଲେ ନାହିଁ । ସେ ସୁପ୍ରଭାଙ୍କୁ ଉଭୟ ପକ୍ଷର ଅସମ୍ମତି ସତ୍ତ୍ୱେ ଗୋପନରେ ବିଭା ହେଲେ ।

ସୁପ୍ରଭାଙ୍କ ପିତା ତାଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କ କନ୍ୟାକୁ ବିବାହ କରି ନାଭାଗ ତାଙ୍କ ପ୍ରତି ଅନ୍ୟାୟ କରିଛନ୍ତି ବୋଲି ଦରବାରରେ ଅଭି-ଯୋଗ ଆଣିଲେ । ରାଜା ଧୃଷ୍ଟ ଓ ରାଜପୁତ୍ର ନାଭାଗଙ୍କ ଭିତରେ ଲଢ଼େଇ ହେବାର ଉପକ୍ରମ ହେଲା । ସେତିକିବେଳେ ଜଣେ ପଣ୍ଡିତ ପରି-ବ୍ରାଜକ ରାଜାଙ୍କୁ କହିଲେ, "ଆପଣଙ୍କ ପୁତ୍ର ବୈଶ୍ୟକନ୍ୟା ବିବାହ କରିଥିବା ଦୃଷ୍ଟିରୁ ଆପଣ ତାଙ୍କୁ କ୍ଷତ୍ରିୟର ଅଧିକାରରୁ ବଞ୍ଚିତ କରି-ପାରନ୍ତି । ଲଢ଼େଇର ଆବଶ୍ୟକତା କ'ଣ ?"

ତାହାହିଁ ହେଲା । ନାଭାଗ ଜଣେ ସାଧାରଣ

ନାଗରିକ ଭାବରେ ବୈଶ୍ୟବୃତ୍ତି କରି ଜୀବନ ନିର୍ବାହ କଲେ ।

ନାଭାଗ ଓ ସୁପ୍ରଭାଙ୍କର ପୁଅଟିଏ ହେଲା । ନାମ ହେଲା ଭନନ୍ଦ । କିଶୋର ଅବସ୍ଥାରେ ଉପନୀତ ହୋଇ ଭନନ୍ଦ ତାଙ୍କ ମା'ଙ୍କୁ ପଚାରିଲେ, "ମୁଁ କି ଭଳି ଭାବରେ ତୁମ୍ଭମାନଙ୍କୁ ସହାୟତା କରିପାରେ ?"

"ବତ୍ସ ! ତୁମ୍ଭେ ଗୋପାଳନ କର ।" ସୁପ୍ରଭା କହିଲେ, ।

କିନ୍ତୁ ଭନନ୍ଦ ଥିଲେ ଅସାଧାରଣ ବାଳକ । ସେ ଭାବିଲେ, "ମା' ନିଶ୍ଚୟ ଗୋ-ରୂପୀ ପୃଥିବୀ କଥା କହୁଛନ୍ତି । କିନ୍ତୁ ପୃଥିବୀ ପାଳନ କରିବାକୁ ହେଲେ ମୋତେ ରାଜା ହେବାକୁ ପଡ଼ିବ । ସେ ପାଇଁ ଆବଶ୍ୟକୀୟ ଶକ୍ତି କାହିଁ ?"

ଏହା ଭାବି ସେ ହିମାଳୟ ଯାଇ ନୀପ ନାମକ ରାଜର୍ଷିଙ୍କ ସହାୟତା ଭିକ୍ଷା କଲେ । ଉକ୍ତ ରାଜର୍ଷି ଅସ୍ତ୍ରଶସ୍ତ୍ର ବିଦ୍ୟାରେ ନିପୁଣ ଥିଲେ । ସେ ଭନନ୍ଦଙ୍କୁ ମନଯୋଗ ସହ ସବୁ ଶିଖାଇଲେ ।

ଭନନ ଯୋଦ୍ଧା ଯୁବକରେ ପରିଣତ ହୋଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ସେତେବେଳକୁ ରାଜା ଧୃଷ୍ଟ ପରଲୋକ ଗମନ କଲେଣି । ନାଭାଗଙ୍କ ସାନଭାଇ ବସୁରାତ ରାଜ୍ୟ ଶାସନ କରୁଥା'ନ୍ତି । ନାଭାଗ ବସୁରାତଙ୍କୁ କହିଲେ, "ମୋ ପିତାଙ୍କ ରାଜ୍ୟର ଭାଗ ମୋତେ ମିଳୁ ।"

"ତୁମ୍ଭ ପିତା ବୈଶ୍ୟନାରୀ ବିଭା ହୋଇ ସିଂହାସନଚ୍ୟୁତ ହୋଇଥିଲେ । ତାଙ୍କର ଭାଗ ନାହିଁ ।" ଉତ୍ତର ଦେଲେ ବସୁରାତ ।

ଫଳରେ ଯୁଦ୍ଧ ହେଲା । ଭନନ୍ଦ ବିଜୟୀ ହୋଇ ପୂରା ରାଜ୍ୟ ଅଧିକାର କଲେ ଓ ପିତାଙ୍କୁ କହିଲେ, "ଏଥର ଆପଣ ସିଂହାସନରେ ବସନ୍ତୁ ।"

"ନା ବତ୍ସ, ସିଂହାସନ ନ୍ୟାୟତଃ ତୁମ୍ଭର ।" ନାଭାଗ କହିଲେ ଓ ଭନନ୍ଦଙ୍କର ଅଭିଷେକ କରାଇଲେ ।





# ଜ୍ୟୋତିଷୀ କାରବାର

ମାଣିକ୍ୟପୁର ଗାଁରେ ଅନେକ ଲୋକଙ୍କ ଘର । ସମସ୍ତେ ମଧ୍ୟବିତ୍ତ । କୃଷିବାସ ସମୟରେ ସଭିଏଁ ବ୍ୟସ୍ତ ରହନ୍ତି । ଅନ୍ୟ ବେଳେ ନାଚ ଗୀତ ଯାତ୍ରା ଇତ୍ୟାଦି ଉପଭୋଗ କରିବାକୁ ସେମାନଙ୍କର ସମୟ ଥାଏ । ସାଧୁସନ୍ଥ ଓ ଜ୍ୟୋତିଷ ଇତ୍ୟାଦିଙ୍କ ଉପରେ ବି ସେ ଗାଁ ଲୋକଙ୍କର ଥାଏ ବହୁତ ବିଶ୍ୱାସ । ସେପରି କୌଣସି ବ୍ୟକ୍ତି ଗାଁକୁ ଆସିଲେ ଲୋକେ କିଛି-ଦିନ ବେଶ୍ ହୁଲସ୍ଥୂଲ୍ କରନ୍ତି ।

ମାଣିକ୍ୟପୁରରେ ଆସି ପହଞ୍ଚିଲେ ଜଣେ ସାଧୁ । ସାଙ୍ଗରେ ଦୁଇ ଶିଷ୍ୟ । ଗାଁ ବାହାରେ ଗୋଟାଏ କୁଡ଼ିଆରେ ସେମାନେ ରହିଲେ । ଶିଷ୍ୟ ଦୁଇଜଣ ଲୋକଙ୍କ ଆଗରେ କହିବୁଲିଲେ କି ସାଧୁ ଜଣେ ବଡ଼ ଜ୍ୟୋତିଷ । ଭୂତ ଭବିଷ୍ୟତ ସେ ଅକ୍ଳେଶରେ କହିପାରିବେ ।

ସାଧୁଙ୍କ ଆଗମନରେ ଗାଁ ଲୋକେ ବଡ଼ ଖୁସି ହେଲେ । ବିଶେଷତଃ ସାଧୁ ଜ୍ୟୋତିର୍ବିଦ୍ ହୋଇ-ଥିବାରୁ ତାଙ୍କ ପ୍ରତି ସେମାନଙ୍କ ଆକର୍ଷଣ ବେଶୀ ହେଲା । ସାଧୁଙ୍କର ଦୁଇ ଶିଷ୍ୟ ସାଧୁଙ୍କ ନାନା ମହିମା ସମ୍ପର୍କରେ ଲୋକଙ୍କ ଆଗରେ ଗପୁଥାନ୍ତି । ସାଧୁ କୁଆଡ଼େ ଜଣେ ମହାରାଜାଙ୍କର ପତ୍ନୀ ବିୟୋଗ କଥା କହିଦେଲେ । ଜଣେ ସାଧବଙ୍କ ଜାହାଜ ନିଖୋଜ ହୋଇଥିବା ବେଳେ ସେ କିପରି ଗଣନା ଦ୍ୱାରା ତା'ର ଠାବ କରିଦେଇ-ଥିଲେ, ଏସବୁ ବିଷୟରେ ନାନା କାହାଣୀ ଶୁଣି-ବାକୁ ମିଳିଲା ।

ଲୋକେ ସାଧୁଙ୍କ ପାଖକୁ ଆସିବାକୁ ଆରମ୍ଭ କଲେ । ଯିଏ ଆସି ନିଜ ଭୂତ ଭବିଷ୍ୟତ ପଚାରେ, ସାଧୁ ପ୍ରଥମେ ତା' ନାମଟି ଖଣ୍ଡିଏ କାଗଜରେ ଲେଖିନେଇ ଭିତରକୁ ଚାଲିଯାଆନ୍ତି ।



କିଛି ସମୟ ପରେ ବାହାରିଆସି ସେ ଲୋକର ଅତୀତ ବିଷୟରେ କିଛି କିଛି କହିଦିଅନ୍ତି। ଯାହା କହନ୍ତି, ସେଥିରେ ମିଛ ନ ଥାଏ। ତା'ପରେ, ଭବିଷ୍ୟତ କଥା କହିବା ପୂର୍ବରୁ ସେ ନିଜ ପ୍ରାପ୍ୟ ଆଦାୟ କରିନିଅନ୍ତି।

ପ୍ରାପ୍ୟ ଦେଇଦେବାକୁ କେହି କୁଣ୍ଠାବୋଧ କରନ୍ତି ନାହିଁ। କାରଣ ଯିଏ ଅତୀତ କଥା ସତ ସତ କହିଦେଇଛି, ସିଏ ଯେ ଭବିଷ୍ୟତ ମଧ୍ୟ କହିଦେଇପାରିବ, ଏଥିରେ ବା ସନ୍ଦେହ କ'ଣ ?

ମାଣିକ୍ୟପୁରରେ ବିନୋଦର ମାମୁଁଘର। ସେ ଛୁଟିରେ ବୁଲି ଆସିଥାଏ। ଗାଁଲୋକଙ୍କଠାରୁ ସାଧୁଙ୍କ ମହିମା କଥା ଶୁଣି ସେ ବି ଥରେଅଧେ ଯାଇ ସାଧୁଙ୍କ ଡେରା ବୁଲିଦେଇ ଆସିଲା। ହେଲେ ସାଧୁଙ୍କୁ ଦେଖି ତା'ର କାହିଁକି ସନ୍ଦେହ ହେଲା ଯେ ସେ ସତ ସାଧୁ ନୁହନ୍ତି। ସେ ପ୍ରଥମେ ଅତୀତ କହିଦେଇ ଯେପରି ସ୍ଥିତରେ ନିଜ ପ୍ରାପ୍ୟ ଆଦାୟ କରିନେଉଛନ୍ତି, ତାହା ଚତୁରା ବ୍ୟବସାୟୀ ବୁଦ୍ଧି ବୋଲି ମନେ ହେଲା।

ସେ ଜଣେ ଶିଷ୍ୟକୁ ପଚାରିଲା, "ସାଧୁ ମହାରାଜ ଲୋକଙ୍କ ନାମ ଲେଖିନେଇ ଭିତରକୁ ଚାଲିଯାଆନ୍ତି କାହିଁ ?"

"ଆରେ ବାବୁ, ଭିତରକୁ ଯାଇ ଧ୍ୟାନରେ ନ ବସିଲେ ସେ ଭୂତ ଭବିଷ୍ୟତ ଜାଣିବେ କିପରି ?" ଶିଷ୍ୟ ଉତ୍ତର ଦେଲା।

ବିନୋଦର ମନ ମାନିଲା ନାହିଁ। ସେ ଦିନେ ରାତିରେ ସାଧୁଙ୍କ ଡେରା ପାଖରେ ଲୁଚି ବସିଲା। ସବୁ ଶୂନ୍‌ଶାନ୍ ହୋଇଯିବା ପରେ ସାଧୁ ତାଙ୍କ ଦୁଇ ଶିଷ୍ୟଙ୍କୁ କହୁଥିବାର ସେ ଶୁଣିଲା : "ଏ ଗାଁର ଅଧାଅଧି ଲୋକ ମୋ ପାଖକୁ ଆସିସାରିଲେଣି। ଆଉ ସପ୍ତାହେ ଭିତରେ ବାକି ଅଧିକ ଆସିଯିବେ। ଦୁଇଜଣ ଗାଁ ଛାଡ଼ି ଆଉ ଗୋଟାଏ ବଡ଼ ଗାଁର ସନ୍ଧାନ ନିଅ। କାଲିଠାରୁ ସେଠାକୁ ପୁଣି ଭିକ୍ଷା ମାଗିବାକୁ ଯାଅ। ଦେଖିବ, ଦୈନିକ ଅନ୍ତତଃ ଆଠଦଶଜଣ ଲୋକଙ୍କର ଅତୀତ କଥା ସଂଗ୍ରହ ହେବା ଦରକାର। ଆଉ

ଗୋଟାଏ କଥା । ଛଦ୍ମବେଶ ଆଉ ଟିକିଏ ସ୍ୱାଭାବିକ ହେବା ଦରକାର । ଲୋକେ ସରଳ ବୋଲି ତୁମେମାନେ ଅସତର୍କ ହେବା ଉଚିତ ନୁହେଁ ।”

ବିନୋଦ ସବୁ ବୁଝିଗଲା । ସେ ଆହୁରି କିଛି ସମୟ ଅପେକ୍ଷା କଲା । ଯେତେବେଳେ ବୁଝିଲା ସେ ସମସ୍ତେ ଶୋଇଗଲେଣି, ସେ ଭିତରେ ପଶିଲା । ଅଳ୍ପ ସମୟ ଭିତରେ ଖଣ୍ଡିଏ ଖାତା ଓ କିଛି ନକଲି ଦାଢ଼ିନିଶ ତା’ ହାତରେ ପଡ଼ିଲା । ସେ ଚୁପି ଚୁପି ବାହାରି ଆସିଲା ।

ଘରକୁ ଆସି ଏକାକୀ ରାତିରେ ସେ ଖାତା ଖଣ୍ଡିକ ଖୋଲି ସେ ପଢ଼ିବାକୁ ଲାଗିଲା । ଦେଖିଲା ସେଥିରେ ତା’ ଗାଁର ପ୍ରାୟ ସବୁ ଲୋକଙ୍କ ଅତୀତ ଜୀବନ ସମ୍ପର୍କରେ କିଛି ନା କିଛି ଲେଖା ଅଛି । କିଏ କେବେ ବସନ୍ତ ବା ସେପରି କିଛି ବ୍ୟାଧିରେ କଷ୍ଟ ପାଇଥିଲା, କିଏ ବ୍ୟବସାୟ କରି ଧନ ସମ୍ପଦ ବୁଡ଼ାଇ ଥିଲା, କେବେ କାହାର ଆତ୍ମୀୟ ସ୍ୱଜନ ବିୟୋଗ ଘଟିଥିଲା, ସେସବୁ ଲେଖା ରହିଛି ।

ପରଦିନ ସକାଳେ ଗାଁର କେତେଜଣ ଲୋକ ସାଧୁଙ୍କ ସହ ଦେଖା କରିବାକୁ ଯାଉଥାନ୍ତି । ବିନୋଦ ବି ସେମାନଙ୍କ ସହ ଗଲା । ପ୍ରଥମଜଣକ ନିଜ ନାମ କହିବା ପରେ ସାଧୁ ତାହା ଲେଖିନେଇ ଭିତରକୁ ଗଲେ । କିନ୍ତୁ ସେ ବାହାରିଲେ ନାହିଁ । ତାଙ୍କର ଜଣେ ଶିଷ୍ୟ ବାହାରିଆସି କହିଲା, “ଆଜି ସାଧୁ ଗଣନା କରିପାରିବେ ନାହିଁ । ସେ ଅସୁସ୍ଥ ।”



"ଆରେ, ସାଧୁମହାରାଜ ଟିକଏ ଆଗରୁ ଏତେ ଚଟକା ଦଣ୍ଡୁଥିଲେ । ସଙ୍ଗେ ସଙ୍ଗେ ଅସୁସ୍ଥ ହେଲେ କପରି ?" ବିନୋଦ ପଚାରିଲା ଓ ଭିତରକୁ ପଶିଗଲା । ତା' ସାଙ୍ଗରେ ଗାଁ ଲୋକେ ବି ଭିତରକୁ ଗଲେ ।

"ଆଜି ତୁମେମାନେ ମୋତେ ବିରକ୍ତ କର ନାହିଁ ।" ସାଧୁ କହିଲେ । ଗାଁ ଲୋକେ ସାଧୁଙ୍କୁ ଡରି ଚାଲିଆସୁଥିଲେ । କିନ୍ତୁ ବିନୋଦ ସେମାନଙ୍କୁ ଅଟକାଇ ରଖିଲା ଓ ସାଧୁଙ୍କୁ କହିଲା, "ଆପଣଙ୍କ ଆଜ୍ଞା ହେଲେ ଆପଣଙ୍କ ତରଫରୁ ମୁଁ ଏମାନଙ୍କ ଅତୀତ କହିଦେଉଛି । ଆଉ ଭବିଷ୍ୟତ ବିଷୟରେ ତ ଚିନ୍ତା ନାହିଁ । ଯାହା କହିଦେଲେ ଚଳିବ !" ଏହା କହି ସେ ଗଣ୍ଠିରେ ଗୁଡ଼ାଇ ନେଇଥିବା ଖାତା ବାହାର କରି ପଢ଼ିବାକୁ ଲାଗିଲା ।

ସାଧୁ ଓ ତାଙ୍କ ଦୁଇ ଶିଷ୍ୟଙ୍କ ମୁହଁ ଫିକା ପଡ଼ିଗଲା । ତା'ପରେ ବିନୋଦ ନକଲି ଦାଢ଼ି-ନିଶ ବାହାର କରି ସେ ଶିଷ୍ୟଙ୍କ ମୁହଁରେ ଲଗାଇବା ମାତ୍ରେ ଗାଁଲୋକେ କହିଲେ, "ଆରେ, ଏ ଦୁଇଜଣ ତ ଭିକ ମାଗିଆସୁଥିଲେ ।"

ସବୁ କଥା ସ୍ପଷ୍ଟ ହୋଇଗଲା । ଛଦ୍ମବେଶରେ ନକଲି ସାଧୁର ନକଲି ଶିଷ୍ୟମାନେ ପ୍ରଥମେ ଗୋଟାଏ ଗାଁକୁ ଯାଇ ସେଠାକାର ସବୁ ଲୋକଙ୍କ ଜୀବନର କିଛି କିଛି ଖବର ସଂଗ୍ରହ କରନ୍ତି । ତା'ପରେ ସାଧୁ ଯାଇ ଜ୍ୟୋତିଷ ରୂପେ ଧରଣୀ ପକାନ୍ତି ।

ଲୋକେ ସେ ତିନି ଠକଙ୍କୁ ଧରିନେଇ ସିପାହି-ମାନଙ୍କ ଜିମା ଦେଲେ ।

ବିନୋଦ ଗାଁ ଲୋକଙ୍କୁ କହିଲା, "ଭାଇମାନେ, ପ୍ରକୃତ ଜ୍ୟୋତିର୍ବିଦ୍ୟା ସହ ଯାହା ଭିତରେ ଉଚ୍ଚତର ଅନୁଭବଶକ୍ତି ଥିବ ସେ ଭୂତ ଭବି-ଷ୍ୟତ କହିଦେଇ ପାରେ, କିନ୍ତୁ ସେଭଳି ବ୍ୟକ୍ତି ତୁମକୁ ଖୋଜି ତୁମ ପାଖକୁ ଆସିବେ ନାହିଁ । ତୁମେ ତାଙ୍କୁ ଖୋଜି ବାହାର କରିବାକୁ ହେବ । ସେମାନଙ୍କ ସଂଖ୍ୟା ବିରଳ ।"



# ଦୃଷ୍ଟି

ଥରେ ବିଦେଶ ଯାଇ ଯୁବକ ଜମିଦାର ଅସୁସ୍ଥ ହୋଇପଡ଼ିଲେ । ସେହି ସହରରେ ତାଙ୍କର ଜଣେ ଦୂର ସମ୍ପର୍କୀୟ ବନ୍ଧୁ ଥିଲେ । ସେ ଯୁବକଙ୍କୁ ନିଜ ଘରକୁ ନେଇଗଲେ । ତାଙ୍କ କନ୍ୟା ଗମ୍ଭୀର ମନୋଯୋଗ ସହକାରେ ସେବାଶୁଶ୍ରୂଷା କରି ଯୁବକଙ୍କୁ ଭଲ କରିଦେଲେ । କିନ୍ତୁ ଯୁବକ ଅନ୍ଧ ହେଲେ ।

ଅନ୍ଧ ଯୁବକଙ୍କୁ ବିଭା ହେଲେ ସେହି କନ୍ୟା ଓ ତାଙ୍କୁ ଭଲ ଭାବରେ ଚଳାଇଲେ ! କିଛି ଦିନ ପରେ ସେ ଅଞ୍ଚଳକୁ ଜଣେ ଗୁଣବାନ୍ ବୈଦ୍ୟ ଆସିଲେ । ସେ ଯେକୌଣସି ଦୃଷ୍ଟିହୀନଙ୍କୁ ଦୃଷ୍ଟିଶକ୍ତି ଦେଇପାରୁଥିଲେ । ଯୁବକଙ୍କ ପତ୍ନୀ ସେ ବୈଦ୍ୟଙ୍କୁ ଡକାଇବାର ବ୍ୟବସ୍ଥା କଲେ । କିନ୍ତୁ ଦିନେ ସେ ତାଙ୍କର ଜଣେ ସଖିଙ୍କ ସହ ଅନ୍ୟ ଏକ କୋଠରିରେ ଚୁପି ଚୁପି କଥାଭାଷା ହେଉଥିବାର ଯୁବକ ଶୁଣିପାରିଲେ । ସଖି ପଚାରୁଥିଲେ : "ତୁ କାନ୍ଦୁଛୁ କାହିଁକି ?" ସେ କହୁଥିଲେ : "ମୋ ସ୍ୱାମୀଙ୍କ ଦୃଷ୍ଟିଶକ୍ତି ଫେରିଆସିବ । ସେ ଆନନ୍ଦ ସାଙ୍ଗକୁ ଦୁଃଖ ହେଲ, ସେ ମୋତେ ଅସୁନ୍ଦରୀ ଦେଖି ମନଦୁଃଖ କରିବେ ।"

ବୈଦ୍ୟ ଆସିବା ବେଳକୁ ଯୁବକ ଚିକିତ୍ସା ହେବାକୁ ନାହିଁ କରିଦେଲେ ।





# ବରର ଯୋଗ୍ୟତା

ବୈଶାଳୀ-ରାଜ ରୁଦ୍ରପ୍ରତାପଙ୍କର ଥିଲେ ଗୋଟିଏ ମାତ୍ର ସନ୍ତାନ—ସୂର୍ଯ୍ୟକୁମାରୀ । ରାଜା ତେଣୁ କନ୍ୟାକୁ ପୁଅ ଭଳି ବଢ଼ାଇଥିଲେ । ସୂର୍ଯ୍ୟକୁମାରୀ ସବୁ ଯୁଦ୍ଧ କୌଶଳ ଆୟତ୍ତ କରିଥା'ନ୍ତି ।

ଯେତେବେଳେ ରାଜକନ୍ୟା ସୂର୍ଯ୍ୟକୁମାରୀଙ୍କର ବିବାହ କରିବା ସମୟ ଆସିଲା, ସେତେବେଳେ ରାଜା ଭାବିଲେ, "ମୋ ଅନ୍ତେ ଏ ରାଜ୍ୟର ଶାସିକା ହେବ ଯେଉଁ ଝିଅ, ତା' ସ୍ୱାମୀ କିପରି ଯୁବକ ହେଲେ ଭଲ ହେବ ?" ସେ ଭାବି ଭାବି ସ୍ଥିର କଲେ, ରାଜକନ୍ୟାଙ୍କୁ ଯିଏ ଯୁଦ୍ଧ ବିଦ୍ୟାରେ ଜିଣିବ, ସେ ଏକା ତାଙ୍କୁ ବିଭା ହେଲେ ଭଲ ହେବ । ଜଣେ ସ୍ତ୍ରୀଲୋକ ରାଜ୍ୟ ଶାସନ କରୁଛି ବୋଲି ଶତ୍ରୁମାନେ ଉଦ୍ଧତ ହୋଇ ରାଜ୍ୟ ଆକ୍ରମଣ କରିବାକୁ ଆଗଭର ହେବେ ନାହିଁ ।

ରାଜକନ୍ୟାଙ୍କର ସ୍ୱୟମ୍ବର ଉପଲକ୍ଷେ କେତେ ରାଜକୁମାର ଆସି ପହଞ୍ଚିଗଲେ । ଅବଶ୍ୟ ପୂର୍ବରୁ ଘୋଷଣା କରିଦିଆ ହୋଇଥିଲା ଯେ ଯିଏ ରାଜକନ୍ୟାଙ୍କୁ ଯୁଦ୍ଧ ବିଦ୍ୟାରେ ହରାଇବ, ସେହି ଏକା ତାଙ୍କୁ ବିଭା ହେବ ।

ସମବେତ ରାଜପୁତ୍ରମାନଙ୍କ ଭିତରେ ଦୁଇଜଣ ବଣୁଆ ଟୋକାଙ୍କୁ ଦେଖାଗଲା । ସେମାନେ ଦୁଇ ବଣୁଆ ରାଜାଙ୍କ ପୁଅ ବୋଲି ପରିଚୟ ଦେଲେ । ରାଜା ଚାହୁଁ ନ ଥିଲେ ଯେ ସେ ଦୁହିଁଙ୍କ ଭିତରୁ ଜଣେ ତାଙ୍କ ଝିଅକୁ ବିଭା ହେଉ । କିନ୍ତୁ ଦେଖାଗଲା, ଅନ୍ୟ କେହି ରାଜପୁତ୍ର ରାଜକନ୍ୟାଙ୍କୁ ହରାଇ ପାରିଲେ ନାହିଁ ।

ଯେତେବେଳେ ସବୁ ରାଜପୁତ୍ରମାନେ ହାରିଗଲେ, ବଣୁଆ ଟୋକା ଦୁହେଁ ଦାବି କଲେ କି ଏଥର ରାଜକନ୍ୟାଙ୍କ ସହ ସେମାନଙ୍କର ବଳ

ପରୀକ୍ଷା ପ୍ରକାଶେ ବ୍ୟବସ୍ଥା କରାଯାଉ । ରାଜା ଏ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି ପାରିଲେ ନାହିଁ ।

ଅଗତ୍ୟା ବଣୁଆ ଟୋକା ବୀରମଲ୍ଲଙ୍କ ସହ ରାଜକନ୍ୟାଙ୍କୁ ଲଢ଼ିବାକୁ ହେଲା । ବୀରମଲ୍ଲ ସବୁ ବିଦ୍ୟାରେ ରାଜକନ୍ୟାଙ୍କୁ ହରାଇଦେଲେ । ହର୍ଷ-ଧ୍ୱନି ଭିତରେ ସେ ଦାବି କଲେ କି ରାଜକନ୍ୟାଙ୍କ ବିବାହ ତାଙ୍କ ସହ ହେବ ବୋଲି ରାଜା ଘୋଷଣା କରିଥିଅନ୍ତି ।

ରାଜା ମହା ଅଡୁଆରେ ପଡ଼ିଲେ । ଜଣେ ବଣୁଆ ଟୋକାକୁ କନ୍ୟା ସମର୍ପିବାକୁ ତାଙ୍କର ମୋଟେ ମନ ବଳୁ ନ ଥିଲା । ଯାହାହେଉ, ଦ୍ୱିତୀୟ ବଣୁଆ ଟୋକା ନାଗମଲ୍ଲ ବାହାରି ଆସି କହିଲା, "ଏପର୍ଯ୍ୟନ୍ତ ମୋର ପରୀକ୍ଷା ନିଆ ହୋଇନାହିଁ । ତେଣୁ ବୀରମଲ୍ଲର ଦାବି ଯୁକ୍ତି-ସଙ୍ଗତ ନୁହେଁ ।"

"ଠିକ୍, ଠିକ୍ । ତୁମ ସହ ବୀରମଲ୍ଲର ଲଢ଼େଇ ହେଉ । କିଏ ଜିତୁଛି ଦେଖାଯାଉ ।" ରାଜା କହିଲେ ।

ସେ ଭାବୁଥିଲେ, ଯଦି ବୀରମଲ୍ଲ ହାରିଯିବ, ତେବେ ଗୋଟାଏ ବିପଦ ଯିବ । ତେଣିକି ନାଗମଲ୍ଲକୁ କହିଦିଆ ହେବ, "ତୁମେ ତ ରାଜ-କନ୍ୟା ସହ ଲଢ଼ି ନାହଁ, ତେଣୁ ତୁମର କୌଣସି ଦାବି ନାହିଁ, ଯାଅ ।"

କିନ୍ତୁ ରାଜାଙ୍କ ଯୋଜନା କାମ ଦେଲା ନାହିଁ ।



କାରଣ ବୀରମଲ୍ଲ କହିଲା, "ମୁଁ ଆସିଥିଲି ରାଜ-କନ୍ୟାଙ୍କ ସହ ଲଢ଼ିବାକୁ । ନାଗମଲ୍ଲ ସହ ମୁଁ ଲଢ଼ିବି କାହିଁକି ? ବୃଥାରେ କାହିଁକି ଜଣକୁ ମୋର ଶତ୍ରୁ କରିବି ?"

ବୀରମଲ୍ଲର ଏ କଥାକୁ ସମସ୍ତେ ସମର୍ଥନ କଲେ । ବାଧ୍ୟ ହୋଇ ରାଜା ନାଗମଲ୍ଲକୁ ରାଜ-କନ୍ୟା ସହ ଲଢ଼ିବାର ସୁଯୋଗ ଦେଲେ । ନାଗମଲ୍ଲ ରାଜକନ୍ୟାଙ୍କୁ ହରାଇଦେଲେ ।

ରାଜା ରୁଦ୍ରପ୍ରତାପ କହିଲେ, "ରାଜକନ୍ୟାଙ୍କୁ ଦୁଇଜଣ ହରାଇଲେ । ରାଜକନ୍ୟା ତ ଦୁଇଜଣଙ୍କୁ ବିବାହ କରିବେ ନାହିଁ । ଅତଏବ ଏ ସ୍ୱୟମ୍ବର ବାତିଲ ହୋଇଗଲା ।"

କିନ୍ତୁ ସମସ୍ତେ ଏ ଘୋଷଣାର ବିରୋଧ କଲେ । ସେମାନେ କହିଲେ, "ମହାରାଜ ! ଆମେ ସମସ୍ତେ ଜାଣୁ ଜଣଙ୍କ ସହ ରାଜକନ୍ୟାଙ୍କର ବିବାହ ହେବ । ଆମ୍ଭେମାନେ ଆସିଛୁ ବିବାହ ଦେଖି ଯିବୁ ବୋଲି । ଏମିତି ଆମକୁ ନିମନ୍ତ୍ରଣ କରି କାହା ସହିତ ହେଲେ ରାଜକନ୍ୟାଙ୍କର ବିବାହ ନ ଦେଇ ବିଦା କରିଦେବା ଆମ ପକ୍ଷରେ ଅପମାନଜନକ ନୁହେଁ କି ? ଯେଉଁ ଦୁଇଜଣ ଯୁବକ ରାଜକନ୍ୟାଙ୍କୁ ହରାଇ ଦେଇଛନ୍ତି, ସେ ଦୁଇଜଣଙ୍କ ଭିତରୁ ଯାହାକୁ ଇଚ୍ଛା ସେ ବରିଭ ହୁଅନ୍ତୁ । ଏହାହିଁ ହେବ ନ୍ୟାୟ ।"

ରାଜା କହିଲେ, "ଆଚ୍ଛା ହେଉ । ଆପଣମାନେ ଦିନେ ଅପେକ୍ଷା କରନ୍ତୁ । ଆଗାମୀ କାଲି ମୋ ଝିଅର ସିଦ୍ଧାନ୍ତ ଆପଣମାନେ ଜାଣିବେ ।"

ସେହି ରାତିରେ ବୀରମଲ୍ଲ ଗୋପନରେ ରାଜାଙ୍କୁ ସାକ୍ଷାତ କରି କହିଲା, "ମହାରାଜ ! ବାସ୍ତବରେ ମୁଁ କୌଣସି ବଣୁଆ ଟୋକା ନୁହେଁ । ମୁଁ କୁନ୍ତଳ ରାଜ୍ୟର ରାଜପୁତ୍ର । ମୁଁ ଶୁଣିଥିଲି, ଆପଣଙ୍କ କନ୍ୟା ଖୁବ୍ କୁଶଳୀ । ପ୍ରକାଶ୍ୟ ଭାବରେ କୁନ୍ତଳ ରାଜପୁତ୍ର ଭାବରେ ତାଙ୍କ ହାତରେ ହାରିଯିବା ଅପମାନଜନକ ହେବ, ସେଥିପାଇଁ ମୁଁ ବଣୁଆ ଟୋକାର ଛଦ୍ମବେଶ ଧରି ଆସିଥିଲି । କିନ୍ତୁ ନାଗମଲ୍ଲ ସତ ସତ ବଣୁଆ ଟୋକା । ସେ ଜଣେ ବଣୁଆ ରାଜାର ପୁଅ । ମୋ ପରିଚୟ ତ ଜାଣିଲେ । ରାଜକୁମାରୀଙ୍କୁ କୁହନ୍ତୁ, କାଲି ସେ ମୋତେ ବରଣମାଳା ଦେବେ ।"

ରାଜା ରୁଦ୍ରପ୍ରତାପ କନ୍ୟାକୁ ସବୁ କଥା ଜଣାଇଲେ । ପରଦିନ କିନ୍ତୁ କନ୍ୟା ରାଜା ତଥା ବୀରମଲ୍ଲକୁ ବିସ୍ମିତ କରି ବରଣମାଳା ଦେଲେ ନାଗମଲ୍ଲ ଗଳାରେ । "ଜଣେ ଛଦ୍ମବେଶୀ ଓ ବଂଶ ପରିଚୟ ଗୋପନକାରୀ ଯୁବକ ଅପେକ୍ଷା ବଣୁଆ ରାଜପୁତ୍ର ବହୁତ ଭଲ ।" ସେ ପିତାଙ୍କୁ ଜଣାଇଲେ ।



# ଯୋଗ୍ୟତା ପତ୍ର

ଜଣେ ରଜା ଥିଲେ । ସେ ସବୁ ଗ୍ରାମରେ ଜଣେ ଜଣେ ବୈଦ୍ୟ ନିଯୁକ୍ତ କରୁଥିଲେ । ଯିଏ ପ୍ରତିଷ୍ଠିତ ତପସ୍ୱୀ-ଗୁରୁମାନଙ୍କ ନିକଟରୁ ଯୋଗ୍ୟତାପତ୍ର ଧରି ଆସୁଥିଲା, ସେ ନିଯୁକ୍ତି ପାଉଥିଲା ।

ସୁବାହୁ ନାମକ ଯୁବକ ଜଣେ ତପସ୍ୱୀ-ଗୁରୁଙ୍କ ନିକଟକୁ ଯାଇ ଖଣ୍ଡିଏ ଯୋଗ୍ୟତାପତ୍ର ମାଗିଲା । ଗୁରୁ କହିଲେ, "ମୁଁ ମିଛରେ କାହାକୁ ଯୋଗ୍ୟତାପତ୍ର ଦିଏ ନାହିଁ ।"

ସୁବାହୁ ଛୁରୀ ବାହାର କରି ବୈଦ୍ୟଙ୍କୁ ମାରିଦେବ ବୋଲି ଧମକ ଦେଲା । ବୈଦ୍ୟ ବାଧ୍ୟ ହୋଇ ଲେଖିଲେ, "ସୁବାହୁ ଦୀର୍ଘକାଳ ଅଧ୍ୟୟନ କରି ବୈଦ୍ୟ ହୋଇଛନ୍ତି ।"

ରାଜା ସେ ପତ୍ର ପଢ଼ି କହିଲେ, "ସମସ୍ତଙ୍କ କ୍ଷେତ୍ରରେ ଲେଖାହୁଏ ପାଞ୍ଚବର୍ଷ । ତୁମେ ହୁଏତ ଉପଯୁକ୍ତ ଛାତ୍ର ନ ଥିଲ, ନ ହେଲେ ଏଥିରେ ଆଉ କିଛି ରହସ୍ୟ ଅଛି ।"

ସୁବାହୁ ପଳାଇବାକୁ ଉଦ୍ୟତ ହେଲା । କିନ୍ତୁ ରାଜା ତାକୁ ଧରି ରଖି ରହସ୍ୟର ସନ୍ଧାନ କଲେ ଓ ସବୁ ଜାଣି ତାକୁ କାରାରୁଦ୍ଧ କଲେ ।





# ସରଳ—ଚତୁର

ଆମ ଗାଁର ମହୀ କଥା ସମସ୍ତେ ଜାଣିଥିଲେ ।

ତା'ର ସବୁଠୁଁ ବଡ଼ ନିଶା ହେଲା, ଯେଉଁ ଖବର କେହି ଜାଣି ନ ଥିବେ ସେ ଖବର ଦେଇ ସମସ୍ତଙ୍କୁ କାବା କରିଦେବ । ନିଜେ ବାହାବା ପାଇବ ।

କିନ୍ତୁ ଏଭଳି ନିଶା ଫଳରେ ସେ ବାରମ୍ବାର ଅମୂଳକ କଥା କହିଲା; ନହେଲେ ନିହାତି ଅତିରଞ୍ଜନ କରି କହିଲା । ଫଳରେ କ୍ରମେ ସମୟ ଆସିଲା ଯେତେବେଳେ ତାକୁ ଆଉ କେହି ବିଶ୍ୱାସ କଲେ ନାହିଁ ।

ସେଥିରେ ତା'ର ବହୁତ ଦୁଃଖ । ସେ ଏତେ ଭାବିଚିନ୍ତି ଲୋକଙ୍କୁ ନୂଆ ନୂଆ କଥା କହିବ, ଅଥଚ ଲୋକେ ତାକୁ ହସି ଉଡ଼ାଇଦେବେ, ଏହା ତାକୁ ବହୁତ ବାଧିଲା । ସେ ମନେ ମନେ ଏପରି କୌଣସି ଖବର ଖୋଜୁଥାଏ, ଯେଉଁଥିରେ ଚମକ ଥିବ, କିନ୍ତୁ ଯାହା ସତ ମଧ୍ୟ ହୋଇ ଥିବ ।

ଥରେ ସେ ଗାଁର ଦୁଇ ଦଳ ଲୋକଙ୍କ ଭିତରେ କୌଣସି କଥାରେ ବିବାଦ ହେଲା । ନ୍ୟାୟ ପରାୟଣ ବିଚାରକ ଭାବରେ ପଡ଼ୋଶୀ ଗାଁର ଜମିଦାରଙ୍କର ଖ୍ୟାତି ଥିଲା । ବିବାଦର ବିଚାର କରିବା ପାଇଁ ତାଙ୍କୁ ଅନୁରୋଧ କରାଗଲା । ସେ ପରଦିନ ସକାଳେ ଆସିବେ ବୋଲି କହିଲେ ।

ସକାଳେ ଗୋଟାଏ ଗଛମୂଳେ ଦୁଇଦଳ ଠୁଳ ହେଲେ । କିନ୍ତୁ ଜମିଦାରଙ୍କର ଦେଖା ନାହିଁ । ବହୁତ ଡେରି ହେଲାରୁ ମହୀ ଭାବିଲା, ସେ ନିଶ୍ଚୟ କୌଣସି ବିଶେଷ କାରଣରୁ ଅଟକି ଯାଇଛନ୍ତି । କାରଣଟି ଜାଣି ସମସ୍ତଙ୍କୁ କହିଲେ ତା'ର ସମ୍ମାନ ବଢ଼ିବ ।

ସେ ଜମିଦାରଙ୍କ ଗାଁ ଅଭିମୁଖେ ଚାଲିଲା । ବାଟରେ ଦେଖିଲା ବହୁତ ଲୋକ ଗୋଟାଏ ଶବର ଅନୁଧାବନ କରୁଛନ୍ତି । ସେ ଜଣକୁ କହିଲା, "ଇଏତ ସାଧାରଣ ଲୋକର ଶବ ନୁହେଁ !"

"ସାଧାରଣ ଲୋକର କିଆଁ ହେବ ?" ଲୋକଟି ଉତ୍ତର ଦେଲା ।

"ଅର୍ଥାତ୍ ବିଶିଷ୍ଟ ଲୋକର । ତୁମ ଗାଁର ବିଶିଷ୍ଟ ଲୋକ କିଏ ?" ମନ୍ତ୍ରୀ ପଚାରିଲା ।

"ଜମିଦାର !" ଲୋକଟି ଉତ୍ତର ଦେଲା ।

ମନ୍ତ୍ରୀ ଏତେ ବଡ଼ ଚମକପ୍ରଦ ଖବର ଶୁଣିବ ବୋଲି ଆଶା କରି ନ ଥିଲା । ସେ ମନେ ମନେ ନିଜର ପ୍ରଶଂସା କରି ଭାବିଲା, ଗାଁ ଲୋକେ କେଡ଼େ ବୋକା । ଜମିଦାର ଏଣେ ମଲେଣି; ସେମାନେ ତେଣେ ତାଙ୍କ ପାଖରୁ ନ୍ୟାୟ ବିଚାର ପାଇବେ ବୋଲି ଅପେକ୍ଷା କରି ବସି ରହିଛନ୍ତି ! ମୁଁ ଯଦି ବୁଦ୍ଧି କରି ଏତେ ବାଟ ଆସି ନ ଥା'ନ୍ତି, ତେବେ ଅସଲ କଥା ଜଣା ପଡ଼ିଥା'ନ୍ତା କିପରି ? ଏତେ ଦିନକେ ଲୋକେ ବୁଝିବେ, ମୁଁ କେଡ଼େ ନିର୍ଭରଯୋଗ୍ୟ !

ମନ୍ତ୍ରୀ ତତ୍କ୍ଷଣାତ୍ ଆସି ଲୋକଙ୍କୁ କହିଲା, "ଆଉ ବସି ରହିଛ କାହା ପାଇଁ ? ଜମିଦାର ଆଉ ନାହାନ୍ତି !"

"ପଳା, ପଳା" ଲୋକେ କହିଲେ ।




"ଆରେ, ମୁଁ ପରା ଶବ ଦେଖି ଆସିଲି !" ମନ୍ତ୍ରୀ ଦୃଢ଼କଣ୍ଠରେ କହିଲା ।

"ତୁ କ'ଣ ଜମିଦାରଙ୍କୁ ଜୀବନ୍ତ ଅବସ୍ଥାରେ ଚିହ୍ନିଥିଲୁ ଯେ ତାଙ୍କ ଶବ ଚିହ୍ନିବୁ ?" ଜଣେ ପଚାରିଲେ ।

ମନ୍ତ୍ରୀ ଅଡ଼ୁଆରେ ପଡ଼ିଲା । ଏତେ ସତ କଥା କହିଲେ ବି ଲୋକେ ବିଶ୍ୱାସ କରିବେ ନାହିଁ, ଏହା ତାକୁ ବହୁତ କଷ୍ଟ ଦେଲା । "ଥୟ ଧର, ମୁଁ ସେ ଗାଁରୁ ସାକ୍ଷୀ ଡାକି ଆଣୁଛି ।" ସେ କହି ଦୌଡ଼ି ଚାଲିଗଲା ।

ଗାଁ ମୁଣ୍ଡରେ ସେ ଜଣେ ଭଦ୍ରଲୋକଙ୍କୁ ଭେଟିଲା ଓ ବୁଝିଲା ସେ ପଡ଼ୋଶୀ ଗାଁର ଲୋକ ।

"ଗୁଣିଲ ବାବୁ, ଆମ ଲୋକଙ୍କୁ କହିବ ତୁମ ଜମିଦାର ମରିଗଲେ ।"

ଭଦ୍ରଲୋକ ବାବା ହୋଇ ମନ୍ତ୍ରୀ ମୁହଁକୁ ଅନାଇଲେ । "ଅନେଇଛ କ'ଣ ବାବୁ, ଏତିକି ସତ କଥା କହିବାକୁ କ'ଣ ତୁମକୁ ଅଡୁଆ ଲାଗୁଛି ? ଖାଲି କହିବ, ତୁମ ଜମିଦାର ମଲେଣି ।"

"ନା, ତା' ମୁଁ କହିବି ନାହିଁ ।" ଭଦ୍ରଲୋକ ଜବାବ ଦେଲେ ।

"କାହିଁକି କହିବ ନାହିଁ ?" ମନ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"କାରଣ ମୁଁ ନିଜେ ଜମିଦାର !" ଭଦ୍ରଲୋକ କହିଲେ ।

ମନ୍ତ୍ରୀକୁ ଜଗତ ଅନ୍ଧାର ଦିଶିଲା । ସେ କାନ୍ଦ କାନ୍ଦ ହୋଇ ସବୁ କହିଗଲା । ଜମିଦାର ତାକୁ କହିଲେ, "ତୋତେ କିଏ ଏ ଧାରଣା ଦେଲା, ମୁଁ ଅନୁମାନ କରି ପାରୁଛି । ତୁ ଯେମିତି ସରଳ, ସେ ଲୋକ ସେମିତି ଚତୁର । ମିଛ ନ କହି ମଧ୍ୟ ଅନ୍ୟକୁ ମିଛ ଧାରଣା ଦେବା ତା'ର ସଉକ । ତୋତେ ଯେମିତି ଏ ଗାଁରେ କେହି ବିଶ୍ୱାସ କରନ୍ତି ନାହିଁ, ତାକୁ ବି ସେମିତି ଆମ ଗାଁରେ କେହି ବିଶ୍ୱାସ କରନ୍ତି ନାହିଁ । ଯିଏ ମରିଗଲେ ସିଏ ଜଣେ ସାଧାରଣ ଲୋକ ନୁହନ୍ତି, ଜଣେ ଶିକ୍ଷକ । ସେଥିପାଇଁ ମୋର ଏଠାକୁ ଆସିବାକୁ ଡେରି ହେଲା । କିନ୍ତୁ ତୁ ଯେତେବେଳେ ସେ ଟୋକାକୁ ମୃତ ଲୋକର ପରିଚୟ ନ ପଚାରି ଆମଗାଁର ବିଶିଷ୍ଟ ଲୋକ କିଏ ବୋଲି ପଚାରିଲୁ, ସେ ସବୁଠୁ ବିଶିଷ୍ଟ ଲୋକ ଭାବରେ ମୋ ନାମ କହିଲା । ବୁଝିଲୁ ବାପା ! ଅନାବଶ୍ୟକ କଥା ଯେତେ କମ୍ କହିବୁ ସେତେ ଭଲ ।"

ମନ୍ତ୍ରୀ ବୁଝିଲା । ତେଣିକି ସେ ଆଉ ଶୃଙ୍ଖଳକର କଥାମାନ କହିବା ଅଭ୍ୟାସ ଛାଡ଼ିଦେଲା । ସେ ଦୀର୍ଘଦିନ ବାକ୍ ସଂଯତ କଲା ପରେ ଯାଇ କ୍ରମେ ଲୋକେ ବି ତାକୁ ବିଶ୍ୱାସ କଲେ ।






କଂସ ବସୁଦେବ ଓ ଦେବକୀଙ୍କୁ କାରାରୁଦ୍ଧ କଲା । କାରାଗାର ଆଗରେ ବସାଇଲା ପ୍ରହରୀ । ବିଷ୍ଣୁଙ୍କ ଅବତାର ଜନ୍ମଗ୍ରହଣ କରିବା ସମୟ ନିକଟତର ହୋଇଆସିଲା ।

କହିବା ବାହୁଲ୍ୟ, କଂସର ଉତ୍କଣ୍ଠା ବଢ଼ି-ଚାଲିଥାଏ । ବାରମ୍ବାର ସେ ନିଜ ବ୍ୟବସ୍ଥା ତଦାରଖ କରି ଦେଖୁଥାଏ । ସେ ବୁଝୁଥାଏ ଯେ ଦେବକୀଙ୍କର ଅଷ୍ଟମ ସନ୍ତାନ ଜନ୍ମ ହେବା ମାନେ ତା' ହାତରେ ମରିବ । ତେଣୁ ସେ ସନ୍ତାନ ବଡ଼ ହୋଇ ଦିନେ ତାଙ୍କୁ ମାରିବ, ସେଭଳି ସମ୍ଭାବନା ନାହିଁ । ଅଷ୍ଟମ ସନ୍ତାନକୁ ମାରିଦେବା ମାନେ ସେ ନିଜ ଶକ୍ତି ବଳରେ ଦୈବବାଣୀ ବିଫଳ ପ୍ରମାଣିତ କରି ଦେବତା-ମାନଙ୍କୁ ହାସ୍ୟାସ୍ପଦ କରି ଛାଡ଼ିବ । ସେ ଗୌରବ ଅବଲମ୍ବେ ପ୍ରାପ୍ୟ ହେବ ଜାଣି ସେ ଖୁସୀ ହେଉଥାଏ ।

କିନ୍ତୁ ସେ ଖୁସୀ ଦୀର୍ଘସ୍ଥାୟୀ ହେଉ ନ ଥାଏ । ବାରମ୍ବାର ଆତଙ୍କ ପଶିଆସୁଥାଏ ନିଜ ହୃଦୟ ଭିତରକୁ । ସେ ରାତିରେ ଭଲ ଭାବରେ ଶୋଇପାରୁ ନ ଥାଏ । ଆମୋଦପ୍ରମୋଦ ଦ୍ୱାରା ମଧ୍ୟ ନିଜକୁ ଭୁଲାଇ ରଖିବାର ଚେଷ୍ଟା କରି ସଫଳ ହେଉ ନଥାଏ ।

ଆସିଲା ଭାଦ୍ରବ କୃଷ୍ଣା ଅଷ୍ଟମୀ । ସେଦିନ ଥିଲା ରୋହିଣୀ ନକ୍ଷତ୍ର । କଂସ ସମ୍ବାଦ ପାଇଲା ଯେ ଦେବକୀ ଆସନ୍ନପ୍ରସବା । ସେ ତା' ଗୁପ୍ତ-ଚର ତଥା ପ୍ରହରୀମାନଙ୍କୁ ଡାକି କହିଦେଉଥାଏ,




"ଏହା ହେଲା ଦେବକୀର ଅଷ୍ଟମ ଗର୍ଭ । ଏହି-ଥର ମୋର ଶତ୍ରୁ ଭୂମିଷ୍ଠ ହେବା କଥା । ତେଣୁ ତୁମ୍ଭେମାନେ ସତର୍କ ଦୃଷ୍ଟି ରଖିଥିବ । ଶିଶୁ ଜନ୍ମ ହେବା ମାତ୍ରେ ମୋତେ ସମ୍ବାଦ ଦେବ ।"

ପ୍ରହରୀମାନେ ଅସ୍ତ୍ର ଧରି କାରାଗାର ଆଗରେ ପଦଚାରଣା କରୁଥାନ୍ତି ।

ଦେବକୀ ବସୁଦେବଙ୍କୁ କହିଲେ, "ଚାରି-ଦିଗରେ ରାକ୍ଷସମାନେ ପ୍ରହରା ଦେଉଛନ୍ତି । ପୂର୍ବରୁ କଥା ହୋଇଥିଲା, ନନ୍ଦ-ପତ୍ନୀ ଯଶୋଦା ସହ ମୁଁ ସନ୍ତାନ ବଦଳ କରିବି । କିନ୍ତୁ ଏଭଳି ପ୍ରହରା ଭିତରେ ରହି ତାହା କରିବା ସମ୍ଭବ ହେବ କିପରି ?"

ଦେବକୀ ଏହା କହୁସାରିବା ମାତ୍ରେ ପ୍ରସବ-ପୀଡ଼ା ଅନୁଭବ କଲେ । ସେ ଏକ ଅତି ସୁନ୍ଦର ଶିଶୁ ଜନ୍ମ ଦେଲେ । ଦେବକୀ ନିଜ ସ୍ୱାମୀଙ୍କୁ ପାଖକୁ ଡାକି ସନ୍ତାନ ଦେଖାଇ କହିଲେ, "ଦେଖ ଏ ଶିଶୁକୁ । ଏଭଳି କାନ୍ତି, ଏଭଳି ସୁନ୍ଦର ନୟନଯୁଗଳ, ପୂର୍ବରୁ କେବେ ସମ୍ଭବ ହୋଇଥିଲା କି ? ଏ ଶିଶୁର ସୌନ୍ଦର୍ଯ୍ୟ ସବୁ କଳ୍ପନାକୁ ବଳିଯିବ । ହାୟ, ତୁମେ ଏହାକୁ ନେଇ କଂସ ହାତରେ ସମର୍ପଣ କରିବ ?"

ବସୁଦେବ ନବଜାତ ଶିଶୁ ଆଡ଼କୁ ନିର୍ନିମେଷ ନୟନରେ ଅନାଇରହିଲେ । ଆଖି ଫେରାଇ ପାରିଲେ ନାହିଁ ।

ସେତିକିବେଳେ ହେଲା ଆକାଶବାଣୀ : "ସବୁ ପ୍ରହରୀ ବର୍ତ୍ତମାନ ମୋ ସୃଷ୍ଟ ମାୟା ଦ୍ୱାରା ନିଦ୍ରା-ଭିଭୂତ । କାରାକକ୍ଷ ତଥା କାରାପ୍ରାଚୀରର ଦ୍ୱାର ବର୍ତ୍ତମାନ ଉନ୍ମୁକ୍ତ । ତୁମକୁ ବାଧା ଦେବାକୁ କେହି ନାହିଁ । ଶିଶୁକୁ ନେଇଯାଇ ଗୋକୁଳରେ ଯଶୋଦାଙ୍କ ପାଖରେ ଛାଡ଼ି ଆସ ।"

ଏହା ଥିଲା ଯୋଗମାୟାଙ୍କର କଣ୍ଠସ୍ୱର । ବସୁଦେବ ଶିଶୁକୁ ହାତକୁ ନେଲେ । ତାଙ୍କ ଆଗରେ କାରାକକ୍ଷର ଦ୍ୱାର ଖୋଲିଗଲା । କାରା-ପ୍ରାଚୀର ବାହାରକୁ ଆସିବା ପର୍ଯ୍ୟନ୍ତ ଗୋଟିଏ ପରେ ଗୋଟିଏ ଆଠଗୋଟି ଦ୍ୱାର ଖୋଲିଗଲା ।

ବସୁଦେବ ଯାଇ ପହଞ୍ଚିଲେ କାଳିନ୍ଦୀ ନଦୀ

ତଟରେ । ନଦୀକୂଳ ଉଚ୍ଛୁଳୁଥାଏ । କିନ୍ତୁ ସେ ପାଣିରେ ପଶିବା ମାତ୍ରେ ନଦୀର ଗଭୀରତା ତଥା ସ୍ରୋତର ପ୍ରକୋପ କମିଗଲା ।

ନଦୀ ପାରି ହୋଇ ସେ ଯାଇ ନନ୍ଦଙ୍କ ଘରେ ପହଞ୍ଚିଲେ । ସେତିକିବେଳେ ଯଶୋଦାଙ୍କ ଗର୍ଭରୁ ଯୋଗମାୟା କନ୍ୟା ରୂପେ ଜନ୍ମ ହୋଇଥାନ୍ତି । ଯଶୋଦା ସେ କନ୍ୟାକୁ ବସୁଦେବଙ୍କ ହାତରେ ସମର୍ପିଦେଲେ ଓ ତାଙ୍କ ହସ୍ତରୁ ପୁତ୍ର ସନ୍ତାନକୁ ଗ୍ରହଣ କଲେ । ସେ କନ୍ୟାକୁ ଆଣି ବସୁଦେବ ଦେବକୀଙ୍କ କୋଳରେ ରଖିଲେ ।



କନ୍ୟାର କାନ୍ଦଣା ଶୁଣି ପ୍ରହରୀମାନଙ୍କ ନିଦ ଭାଙ୍ଗିଗଲା । ସେମାନେ ଦୌଡ଼ିଯାଇ କଂସକୁ ଖବର ଦେଲେ କି ଦେବକୀ ପ୍ରସବ କରିସାରି-ଲେଣି । କଂସ ଦୌଡ଼ି ଦୌଡ଼ି ଆସି ପହଞ୍ଚିଯାଇ ବସୁଦେବଙ୍କୁ କହିଲା, "କାହିଁ ତୁମ ଶିଶୁ ? ସେ ଦେବକୀର ଅଷ୍ଟମ ଗର୍ଭରୁ ଜାତ ମୋର ଶତ୍ରୁ । ତାକୁ ଏହିକ୍ଷଣି ବଧ କରିବା ମୋର କର୍ତ୍ତବ୍ୟ ।"

ବସୁଦେବ ମର୍ମାହତ ହେବାର ଭାବ ଦେଖାଇ ବସିରହିଲେ । କଂସ ଶିଶୁକୁ ଦେଖି ବିସ୍ମିତ ହେଲା । ଦେବକୀର ଅଷ୍ଟମ ଗର୍ଭରୁ ବିଷ୍ଣୁଙ୍କ ଅବତାର ପୁତ୍ର ରୂପେ ଜନ୍ମଗ୍ରହଣ କରିବା କଥା । କନ୍ୟା ଜନ୍ମ ହେଲା କିପରି ? କେହି କିଛି ଯାଦୁ କରିଛି କି ? ଯାହା ହେଉ, ସେ ଶିଶୁକୁ ଆଣି ତା' ଗୋଡ଼ ଦୁଇଟି ଧରି ତାକୁ ପଥର ଉପରେ ପିଟିଦେବାର ଉଦ୍ୟମ କଲା ।

ତତ୍‌କ୍ଷଣାତ୍ ଶିଶୁ ତା' ହାତରୁ ଖସି ଶୂନ୍ୟକୁ ଯାଇ ଦେବୀ ମୂର୍ତ୍ତି ଧାରଣ କରି କୋମଳ ସ୍ୱରରେ କହିଲା, "ଆରେ ଦୁଷ୍ଟ, ମୋତେ ମାରି କ'ଣ ଲାଭ ପାଇବୁ ଭାବୁଛୁ ? ତୋର ବିନାଶକାରୀ ନିରାପଦରେ ଅନ୍ୟତ୍ର ବଢ଼ୁଛି ।"

ଏହା ପରେ ମୂର୍ତ୍ତି ଅଦୃଶ୍ୟ ହୋଇଗଲା । କଂସର ମନେ ହେଲା ସେ ଯେପରି ପାଗଳ ହୋଇଯିବ । ନିଜ ପ୍ରାସାଦକୁ ଫେରିଯାଇ ଧେନୁକ, ବତ୍ସକ, ପ୍ରଲମ୍ବ ଆଦି ନିଜର ହିତୈଷୀ-ମାନଙ୍କୁ ଡକାଇ କହିଲା, "ଗୋକୁଳରେ ଯେତେ



ସଦ୍ୟଜାତ ଶିଶୁ ଦେଖିବ, ସମସ୍ତଙ୍କୁ ନିର୍ମମ ଭାବରେ ମାରିପକାଅ । ମୋତେ ଜୀବନରେ ରଖିବାକୁ ଚାହୁଁଥିଲେ ଏତକ କରିବାକୁହିଁ ହେବ । ରାକ୍ଷସୀ ପୂତନା ଶିଶୁହତ୍ୟାରେ ବେଶ୍ ପାରଙ୍ଗମା । ସେ ତୁମକୁ ସାହାଯ୍ୟ କରିବ ।"

ସକାଳ ହେଲା । ନନ୍ଦ ପୁତ୍ରଲାଭ ଉପଲକ୍ଷେ ଉତ୍ସବର ଆୟୋଜନ କଲେ । ସେ ସମ୍ବାଦ ଚତୁର୍ଦ୍ଦିଗ ବ୍ୟାପିଗଲା । କଂସ ବି ତାହା ଶୁଣିଲା । କିନ୍ତୁ ନନ୍ଦଙ୍କ ପୁତ୍ରକୁ ମାରିବା ଏଡ଼େ ସହଜ ନ ଥିଲା । ସେ ଛଳନାର ଆଶ୍ରୟ ନେଲା । ପୂତନା ଯାଇ କୃଷ୍ଣଙ୍କୁ ସ୍ତନ୍ୟପାନ କରାଇବା ଅବସରରେ ତାଙ୍କୁ ମାରିବାର କଳ୍ପନା କରିଥିଲା । କିନ୍ତୁ ମଲା ନିଜେ । ପରେ ପରେ ଅସାଧାରଣ ବଳବାନ୍ ଧେନୁକ, ବତ୍ସକ, ବକ ଓ ପ୍ରଲମ୍ବ ରାକ୍ଷସ ମଧ୍ୟ କୃଷ୍ଣଙ୍କୁ କୌଣସି ନା କୌଣସି ଛଳରେ ମାରିବାକୁ ଯାଇ ମଲେ ।

କ୍ରମେ କୃଷ୍ଣ ବଡ଼ ହୋଇ ନାନା ଅଲୌକିକ କାର୍ଯ୍ୟ କଲେ । ଥରେ ପର୍ବତ ଅଙ୍ଗୁଳି ଅଗରେ ରଖି ପ୍ରବଳ ବର୍ଷାରୁ ଲୋକଙ୍କୁ ରକ୍ଷା କଲେ । କଂସ ବୁଝିଲା, କୃଷ୍ଣଙ୍କ ହାତରେହିଁ ତା'ର ମୃତ୍ୟୁ ନିଧାର୍ଯ୍ୟ ।

ତଥାପି କୃଷ୍ଣଙ୍କୁ ମାରିପକାଇବା ଉଦ୍ୟମରୁ ସେ ବିରତ ହେଲା ନାହିଁ । ନିଜ ଘରେ ଧନୁଯାଗ ଉତ୍ସବର ଆୟୋଜନ କରି କୃଷ୍ଣ ଓ ବଳରାମଙ୍କୁ ଡକାଇଲା । ରଥ ଧରି ଡାକିବାକୁ ଗଲେ ଅକ୍ରୂର ।

କୃଷ୍ଣ ବଳରାମ ମଥୁରାପୁରୀରେ ପହଞ୍ଚିବା ମାତ୍ରେ ସେମାନଙ୍କୁ ହାତୀ ମଡ଼ାଇ, ପୁଣି ଚାଣୁର, ମୁଷ୍ଟିକ ଆଦି ବୀରଙ୍କ ଦ୍ୱାରା ବଧ କରିବାର ଚେଷ୍ଟା କଲା କଂସ । କୃଷ୍ଣ ବଳରାମ ସେମାନଙ୍କୁ ତ ମାରିଲେ, କଂସର କେଶାକର୍ଷଣ କରି ମଞ୍ଚରୁ ତଳକୁ ପକାଇ ତାକୁ ବି ମାରିଲେ । ସେମାନେ ନିଜ ପିତାମାତାଙ୍କୁ କାରାମୁକ୍ତ କଲେ ଓ ଉଗ୍ରସେନଙ୍କୁ ରାଜା କଲେ ।

ଏହାପରେ କୃଷ୍ଣବଳରାମଙ୍କର ଉପନୟନ କରାଇ ବସୁଦେବ ସେମାନଙ୍କୁ ସାନ୍ଦୀପନି ମୁନିଙ୍କ

ନିକଟକୁ ପାଠ ପଢ଼ିବାକୁ ପଠାଇଲେ। ଗୁରୁ ଆଶ୍ରମରେ ବାରବର୍ଷ କାଳ ରହି ସେମାନେ ବିଦ୍ୟା ଲାଭ କଲେ।

କଂସର ଶ୍ୱଶୁର ଜରାସନ୍ଧ କଂସର ନିଧନ ସମ୍ବାଦ ଶୁଣି ଇତି ମଧ୍ୟରେ ମଥୁରା ଆକ୍ରମଣ କରି ସବୁ ଧ୍ୱସ୍ତବିଧ୍ୱସ୍ତ କରିଦେଇ ଚାଲିଯାଇଥାଏ। କୃଷ୍ଣ ଫେରିବା ପରେ ବି ସେ ଆକ୍ରମଣ କଲା ଓ କୃଷ୍ଣଙ୍କ ସହ ସାତଥର ଯୁଦ୍ଧ କଲା। ପୁଣି ମ୍ଲେଚ୍ଛ ରାଜା କାଳଯବନକୁ ମତାଇ ତା' ଦ୍ୱାରା ମଥୁରା ଆକ୍ରମଣ କରାଇଲା।



କୃଷ୍ଣ ଯାଦବମାନଙ୍କୁ ଡକାଇ କହିଲେ, "ଆମ୍ଭେମାନେ ଏଠାରେ ଥିବା ପର୍ଯ୍ୟନ୍ତ ଜରାସନ୍ଧର ପ୍ରରୋଚନାରେ ଦୁଷ୍ଟ କାଳଯବନ ବାରଂବାର ମଥୁରା ଆକ୍ରମଣ କରୁଥିବ। ସେ ନିର୍ମମ, ଏବଂ ତା'ର ସୈନ୍ୟବାହିନୀ ବିରାଟ। ମଥୁରାବାସୀମାନେ ବାରଂବାର ହଇରାଣ ହେବା ମୁଁ ଚାହେଁନାହିଁ। ତେଣୁ ମୋ ମତରେ ଆମେ ମଥୁରା ଛାଡ଼ି ସମୁଦ୍ର ତୀରବର୍ତ୍ତୀ ଦ୍ୱାରକାରେ ଯାଇ ବସବାସ କରିବା ଉଚିତ ହେବ। ଗରୁଡ଼ଠାରୁ ଶୁଣିଛି, ରୈବତକ ପର୍ବତ ନିକଟବର୍ତ୍ତୀ ଦ୍ୱାରକା ଅତ୍ୟନ୍ତ ରମଣୀୟ ସ୍ଥାନ।"

କୃଷ୍ଣଙ୍କ ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା। ସମସ୍ତ ଯାଦବବଂଶ ଦ୍ୱାରକାରେ ପହଞ୍ଚିଲେ ଓ ସେଠାରେ ନୂତନ ବସତି ସ୍ଥାପନ କଲେ।

ପରିବାର ପରିଜନଙ୍କୁ ସେଠାରେ ନିରାପଦରେ ରଖି କୃଷ୍ଣ ବଳରାମ ଥରେ ମଥୁରା ଆସିଲେ। କାଳଯବନ ସେମାନେ ଆସିବା ସମ୍ବାଦ ପାଇ ସଙ୍ଗେ ସଙ୍ଗେ ମଥୁରା ଆକ୍ରମଣ କଲା। କୃଷ୍ଣ କାଳଯବନ ଆଗରୁ ପଳାଇବାକୁ ଲାଗିଲେ। ଉତ୍ସାହିତ ହୋଇ କାଳଯବନ ତାଙ୍କ ଅନୁସରଣ କଲା। କୃଷ୍ଣ ଯାଇ ମୁଚୁକୁନ୍ଦ ମୁନିଙ୍କ ଆଶ୍ରମ ଭିତରେ ଲୁଚିଗଲେ। ମୁଚୁକୁନ୍ଦ ନିଦରେ ଶୋଇଥାନ୍ତି। କାଳଯବନ ଆଶ୍ରମ ଭିତରେ ପଶିଯାଇ ମୁନିଙ୍କୁ ପଦାଘାତ କଲା। ମୁନି କ୍ରୋଧଭରେ କାଳଯବନ ଆଡ଼କୁ ଦୃଷ୍ଟିପାତ କରିବା ମାତ୍ରେ ସେ ଭସ୍ମ ହୋଇଗଲା।



ଏହା ପରେ କୃଷ୍ଣବଳରାମ ଦ୍ୱାରକା ଲେଉଟି-ଗଲେ । କିଛିଦିନ ପରେ ବିଦର୍ଭରାଜାଙ୍କ କନ୍ୟା ରୁକ୍ମିଣୀ ସହ ଚେଦି-ରାଜପୁତ୍ର ଶିଶୁପାଳର ବିବାହ ପ୍ରସ୍ତାବ ପଡ଼ିଥାଏ । ରୁକ୍ମିଣୀ କିନ୍ତୁ କୃଷ୍ଣଙ୍କୁ ବିବାହ କରିବାକୁ ସ୍ଥିର କରିଥାନ୍ତି । ଯଥା ସମୟରେ ବଳରାମଙ୍କ ସହାୟତାରେ କୃଷ୍ଣ ରୁକ୍ମିଣୀଙ୍କୁ ହରଣ କରିଆଣି ଦ୍ୱାରକାରେ ବିବାହ କଲେ ।

ଦିନ ଗଡ଼ିଚାଲିଥାଏ । ରୁକ୍ମିଣୀ ପ୍ରଦ୍ୟୁମ୍ନ ନାମକ ଏକ ପୁତ୍ରସନ୍ତାନ ଜନ୍ମ ଦେଲେ । ସେ ସନ୍ତାନର ଜନ୍ମରେ ସମସ୍ତେ ଖୁସୀ ହେଲେ । କିନ୍ତୁ ଶମ୍ବର ନାମକ ରାକ୍ଷସ ଆସି ଦିନେ ଶିଶୁଟିକୁ ଉଠାଇନେଇ ପଳାଇଲା ଓ ନିଜ କନ୍ୟା ମାୟାବତୀଙ୍କୁ ଦେଲା ।

ଦ୍ୱାରକା ନଗରୀରେ କୃଷ୍ଣଙ୍କ ପ୍ରାସାଦ ଦୃଢ଼ ପ୍ରାଚୀର ଦ୍ୱାରା ସୁରକ୍ଷିତ ଥିଲା । ପୁଣି ସୈନ୍ୟ-ସାମନ୍ତ ସେ ପ୍ରାସାଦ ଚତୁର୍ଦ୍ଦିଗରେ ପ୍ରହରା ଦେଉଥିଲେ ଏବଂ ଯାଦବମାନେ ମଧ୍ୟ ସର୍ବଦା ସତର୍କ ରହୁଥିଲେ । ଏଭଳି ପରିସ୍ଥିତିରେ ଶିଶୁକୁ ହରଣଚାଳ କରିନେଲା କିଏ ?

କୃଷ୍ଣ ଜଗଦମ୍ବାଙ୍କୁ ପ୍ରାର୍ଥନା କରି କହିଲେ, "ତୁମ ମାୟାଶକ୍ତି ବିନା ଏଭଳି ଅସମ୍ଭବ ଘଟଣା ଘଟିବା ସମ୍ଭବପର ହୋଇ ନ ଥାନ୍ତା । ସୁରକ୍ଷିତ ପ୍ରାସାଦ ଭିତରୁ ମୋ ସନ୍ତାନକୁ କିଏ ଚୋରାଇ-ନେବ, ଏହା କମ୍ ଅପମାନଜନକ ନୁହେଁ । କିଏ ଏଭଳି କାମ କରିପାରିଲା ? ଅନୁଗ୍ରହ କରି ପୁତ୍ରକୁ ଫେରାଇଦିଅ ।"

କୃଷ୍ଣଙ୍କ ଆଗରେ ପ୍ରତ୍ୟକ୍ଷ ହେଲେ ଦେବୀ । ସେ କହିଲେ, "ଶାପବଶରୁ ପୁତ୍ରକୁ ଶମ୍ବର ରାକ୍ଷସ ଦ୍ୱାରା ଅପହୃତ ହେବାକୁ ପଡ଼ିଲା । କିନ୍ତୁ ଚିନ୍ତା ନାହିଁ । ଷୋହଳ ବର୍ଷ ବୟସ ବେଳକୁ ସେ ଶମ୍ବରକୁ ନିଧନ କରି ଫେରିଆସିବ ।"

ଦେବୀଙ୍କ ଆଶ୍ୱାସନା ବାଣୀ ଶୁଣି କୃଷ୍ଣ ଓ ରୁକ୍ମିଣୀ ଶାନ୍ତ ହେଲେ ।

ବାସ୍ତବିକ, ଏତେ ପ୍ରହରୀଙ୍କ ଦୃଷ୍ଟି ଏଡ଼ାଇ କିପରି ଅବା ଶମ୍ବର ରାକ୍ଷସ ପ୍ରଦ୍ୟୁମ୍ନଙ୍କୁ ନେଇ

ପଳାଇଲ ? ଦେବୀଙ୍କ ମାୟା ବିନା ଏହା ସମ୍ଭବ ହୋଇ ନ ଥାନ୍ତା । ମାୟା ଏକ ଅମୋଘ ଶକ୍ତି । ମଣିଷ, ଦେବତା, ରାକ୍ଷସ, କେହି ବି ମାୟା କବଳରୁ ସହଜରେ ବର୍ତ୍ତିପାରନ୍ତି ନାହିଁ । ଦଣ୍ଡକାରଣ୍ୟରେ ରାମଚନ୍ଦ୍ରଙ୍କୁ ସୁନା ମୃଗ ପଛରେ ଧାବମାନ କରାଇଲା ଏହି ମାୟା । ମାୟା-ଯୋଗୁହିଁ ରାମଚନ୍ଦ୍ର ସୀତା କେଉଁଠାରେ ଅଛନ୍ତି ତାହା ଜାଣିପାରୁ ନ ଥିଲେ । ମାୟା ଯୋଗୁହିଁ ସେ ନିଜର ଦୁଇ ପୁଅ ଲବକୁଶଙ୍କୁ ଚିହ୍ନିପାରୁ ନ ଥିଲେ । ବାଲ୍ମୀକି ଚିହ୍ନାଇବାରୁ ଯାଇ ଜାଣିଲେ ।

ମାନବ ଦେହ ଧାରଣ କଲେ ସ୍ୱୟଂ ଭଗ-ବାନ୍‌ଙ୍କୁ ମଧ୍ୟ ମାନବଜୀବନର ନିୟମର ବଶୀ-ଭୂତ ହୋଇ ଚଳିବାକୁ ପଡ଼େ । ସେଥିପାଇଁ କୃଷ୍ଣଙ୍କୁ ମଧ୍ୟ ଦୁରାତ୍ମା ରାକ୍ଷସମାନଙ୍କ କବଳରୁ ନାନା କୌଶଳରେ ବର୍ତ୍ତିରହିବାକୁ ପଡ଼ୁଥିଲା, ଦରକାର ହେଲେ ଲୁଚିରହିବାକୁ ମଧ୍ୟ ପଡ଼ୁ-ଥିଲା ।

କୃଷ୍ଣଙ୍କୁ ଆହୁରି ଅନେକ ମାନବ-ସୁଲଭ କାମ କରିବାକୁ ପଡ଼ୁଥିଲା । ଥରେ ପତ୍ନୀ ସତ୍ୟ-ଭାମାଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ତାଙ୍କୁ ସ୍ୱର୍ଗରୁ ପାରିଜାତ ବୃକ୍ଷ ଉପାଡ଼ିଆଣିବାକୁ ପଡ଼ିଥିଲା (ଓ ଫଳରେ ଇନ୍ଦ୍ରଙ୍କ ସହ ତାଙ୍କର ଯୁଦ୍ଧ ହୋଇ-ଥିଲା । ପୁଣି ଜାମ୍ବବତୀ ପୁତ୍ର କାମନା କରିବାରୁ କୃଷ୍ଣଙ୍କୁ ଋଷି ଉପମନ୍ୟୁଙ୍କ ଆଶ୍ରମକୁ ଯାଇ ତପସ୍ୟା ଧ୍ୟାନ କରିବାକୁ ପଡ଼ିଥିଲା । ଧ୍ୟାନରେ ସେ ଶିବ ପାର୍ବତୀଙ୍କୁ ସ୍ମରଣ କରିଥିଲେ । ଶିବପାର୍ବତୀ ତୁଷ୍ଟ ହୋଇ ତାଙ୍କୁ ଆବଶ୍ୟକୀୟ ବର ଦେଇ-ଥିଲେ ।

ଅତଏବ ପୃଥିବୀରେ ଜନ୍ମ ନେଲେ ସମସ୍ତଙ୍କୁ ମାୟା ଦ୍ୱାରା ପରିଚାଳିତ ହେବାକୁ ହୁଏ । ଭଗବାନ୍‌ଙ୍କୁ ମଧ୍ୟ ନିଜର ପରମ ଶକ୍ତି ସମ୍ବରଣ କରି ଚଳିବାକୁ ହୋଇଥାଏ ।

ଏହି ପ୍ରବଳ ମାୟାର ପରିଚାଳିକା ହେଲେ ମହାଦେବୀ ।





# ରେଶମ ବସ୍ତ୍ରର ଜନ୍ମ

କେତେ ହଜାର ବର୍ଷ ତଳର କଥା ।

ଚୀନ୍‌ର ଜଣେ ସମ୍ରାଟ୍ ଥରେ ଅତି ସୁନ୍ଦରୀ କନ୍ୟାଟିଏ ବିଭା ହୋଇ ଉଆସକୁ ଆଣିଲେ । କନ୍ୟାଟିର ନାମ ସିଲିଂ ସୀ ।

ସୀ ଦେଖିବାକୁ ଅସାମାନ୍ୟା ସୁନ୍ଦରୀ । ସମ୍ରାଟ୍ ତାଙ୍କୁ ସୁଖୀ କରିବା ପାଇଁ କେତେ ଦାସଦାସୀ ଖଞ୍ଜିଦେଇଥାନ୍ତି । ଉଆସର ଯେଉଁ ଅଂଶରେ ସୀ ରହୁଥିଲେ, ସେ ଅଂଶକୁ ସମ୍ରାଟ୍ କେତେ କିସମର ଦୁର୍ମୂଲ୍ୟ ବସ୍ତୁରେ ସଜ୍ଜିତ କରିଥାନ୍ତି ।

ରାଣୀଙ୍କ ସୌନ୍ଦର୍ଯ୍ୟ ତଥା ତାଙ୍କ ମଧୁର ବ୍ୟବହାରରେ ମୁଗ୍ଧ ହୋଇ ଦାସୀମାନେ ସର୍ବଦା ତାଙ୍କ ସେବା କରିବାକୁ ତତ୍ପର ଥା'ନ୍ତି । ରାଣୀଙ୍କ ସନ୍ତୋଷ ପାଇଁ ସେମାନେ ଯାହା ଦରକାର ତାହା କରିବାକୁ ପ୍ରସ୍ତୁତ ଥିଲେ ।

କିନ୍ତୁ ରାଣୀଙ୍କ ମନରେ ସୁଖ ନ ଥିଲା । ସେ ସବୁବେଳେ ମନ ମାରି ବସିରହୁଥିଲେ । ଅନେକ ସମୟରେ କାନ୍ଦୁଥିଲେ । ତାଙ୍କ ବୟସ ବେଶୀ ହୋଇ ନ ଥିଲା ଓ ସେ ତାଙ୍କର ବାପା-ମାଙ୍କୁ ଛାଡ଼ି ଆସିଥିବାରୁ ସେପରି ଦୁଃଖ କରୁଥିଲେ ବୋଲି ପ୍ରଥମେ ପ୍ରଥମେ ସମସ୍ତେ ଧରିନେଉଥିଲେ । କିନ୍ତୁ ଅନେକ ଦିନ ବିତିଯିବା ସତ୍ତ୍ୱେ ରାଣୀଙ୍କ ମନୋଭାବରେ କୌଣସି ପରିବର୍ତ୍ତନ ନ ହେବାରୁ ସମ୍ରାଟ୍ ବହୁତ ଚିନ୍ତିତ ହେଲେ ।

ଦିନେ ରାଣୀ ସୀ ଉଦ୍ୟାନରେ ବସିରହିଥିବା ବେଳେ ସମ୍ରାଟ୍ ତାଙ୍କର ଦୁଇଜଣ ଜ୍ଞାନୀ ମନ୍ତ୍ରୀଙ୍କୁ ଧରି ତାଙ୍କ ପାଖକୁ ଗଲେ ଓ ପଚାରିଲେ, "ରାଣୀ ! ତୁମର କ'ଣ ଅଭାବ ଯେ ତୁମେ ଉଦାସ ହୋଇ ରହୁଛ ? ଯାହା ତୁମକୁ କ୍ଲେଶ ଦେଉଛି, ମୋର ଏ ବିଶ୍ୱସ୍ତ ମନ୍ତ୍ରୀଙ୍କ ପାଖରେ ତାହା ପ୍ରକାଶ କରି କୁହ । ସେମାନେ ତୁମକୁ

(ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଆହୃତ)



ସମାଧାନର ଉପାୟ କହିଦେବେ ।"

ଦୁଇ ପ୍ରବୀଣ ମନ୍ତ୍ରୀ ମଧ୍ୟ ଗଦ୍‌ଗଦ କଣ୍ଠରେ କହିଲେ, "ହଁ, ଝିଅ ! ଆମେ ଦୁହେଁ ତୁମ ବାପା ଭଳି । ସଂସାରର ସୁଖ ଦୁଃଖ ସମସ୍ୟା ଓ ସମାଧାନ ସମ୍ପର୍କରେ ଆମର ବହୁତ ଜ୍ଞାନ ଅଛି । ଅତଏବ ଆମେ ତୁମ ଦୁଃଖ ଦୂର କରିବା ସକାଶେ କୌଣସି ନା କୌଣସି ଉପାୟ ବାହାର କରିପାରିବୁ ।"

"ସମ୍ରାଟ୍ ! ବାସ୍ତବିକ ମୋର ଦୁଃଖ କରିବାର କୌଣସି କାରଣ ନାହିଁ । ତଥାପି ମୁଁ ମୋ ମନ ଭଲ ରଖିପାରୁନାହିଁ, ଏ କଥା ଠିକ୍ । କିନ୍ତୁ ଆପଣ ସେ ବିଷୟରେ ଚିନ୍ତା କରନ୍ତୁ ନାହିଁ ।" ରାଣୀ ବିବ୍ରତ ହୋଇ କହିଲେ ।

ସମ୍ରାଟ୍ କିନ୍ତୁ ମନ୍ତ୍ରୀ ଦୁଇଜଣଙ୍କୁ ଅନାଇ ନିର୍ଦ୍ଦେଶ ଦେଲେ, "ଆପଣମାନେ ରାଣୀଙ୍କୁ ପ୍ରଫୁଲ୍ଲ କରିବା ଦିଗରେ କୌଣସି ନା କୌଣସି ଉପାୟ ବାହାର କରନ୍ତୁ ।" ଏହା କହି ସମ୍ରାଟ୍ ଚାଲିଗଲେ ।

କିଛି ସମୟ ବିତିଗଲା । ମନ୍ତ୍ରୀମାନେ ଅନ୍ୟତ୍ର ବସି ଉପାୟ ଚିନ୍ତା କରୁଥାନ୍ତି, ଏଣେ ପରିଚାରିକାମାନେ ରାଣୀଙ୍କ ଆଗରେ ଆଣି ଚାହା ରଖିଲେ । ରାଣୀ ଅନ୍ୟମାନଙ୍କୁ ଚାହା ପିଇବାକୁ କହି ନିଜେ ସେମିତି ବସିରହିଲେ । ପିଆଲାରେ ଚାହା ଥଣ୍ଡା ହେଉଥାଏ ।

ହଠାତ୍ ଗଛ ଉପରୁ କିଛି ଖସିଆସି ରାଣୀଙ୍କ ଚାହା ପିଆଲାରେ ପଡ଼ିଲା । ଚାହା ଛିଟିକିଆସି ରାଣୀଙ୍କ ପୋଷାକରେ ପଡ଼ିଲା ।

ପରିଚାରିକାମାନେ ରାଣୀଙ୍କର ପୋଷାକରେ ଦାଗ ଲାଗିଗଲା ବୋଲି ବ୍ୟସ୍ତ ହୋଇପଡ଼ିବାର ଦେଖି ରାଣୀ ସେମାନଙ୍କୁ କହିଲେ, "ପ୍ରଥମେ ଦେଖ, ପିଆଲାରେ କ'ଣ ପଡ଼ିଛି ।"

ପରିଚାରିକାମାନେ ପିଆଲା ଭିତରୁ ଯାହା ଉଠାଇଲେ, ତାହା ଛୋଟ ପେଣ୍ଡୁଟିଏ ଭଳି ଦିଶୁଥିଲା । ରାଣୀ ତାହା ହାତକୁ ନେଇ ଦେଖିଲେ, ତାହା ଅତ୍ୟନ୍ତ କୋମଳ । ଗରମ ଚାହାରେ ପଡ଼ି ତାହା ଆହୁରି କୋମଳ ହୋଇ-

ପାଇଥାଏ ଏବଂ ସେଥିରୁ ସୂକ୍ଷ୍ମ ସୂତାଖିଅ ଭଳି ଚିଜ ବାହାରୁଥାଏ ।

ରାଣୀ ସେ ସୂତାଖିଅ ଟାଣିବାକୁ ଲାଗିଲେ । ତାହା ଲମ୍ବ ହୋଇ ବାହାରିଆସିଲା ।

"ଆହା ! ଏ ସୂତା କେଡ଼େ ଚମତ୍କାର ! ଏଥିରେ ଯଦି ଲୁଗା ବୁଣାଯାଇପାରନ୍ତା, ତେବେ ତାହା କେଡ଼େ ସୁକୁମାର ବସ୍ତ୍ର ହୁଅନ୍ତା !" କହିଲେ ରାଣୀ ।

ପ୍ରଥମଥର ପାଇଁ ତାଙ୍କ ମୁହଁ ସରସ ଦିଶିବାର ଦେଖି ପରିଚାରିକାମାନଙ୍କ ଆନନ୍ଦ କହିଲେ ନ ସରେ ।

ରାଣୀଙ୍କ ନିର୍ଦ୍ଦେଶାନୁଯାୟୀ ପରିଚାରିକାମାନେ ଗଛରୁ ଶହ ଶହ ପେଣ୍ଡୁ ସଂଗ୍ରହ କରି ଆଣିଲେ ।

ସେସବୁ ଗୋଟାଏ ପ୍ରକାର ପୋକଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥାଏ । ତହିଁ ଭିତରେ ସେମାନଙ୍କ ଅଣ୍ଡା ଥାଏ ।

ଗରମ ସ୍ଥାରେ ପଡ଼ି ସୂତା ସହଜରେ ବାହାରିଥିବାରୁ ରାଣୀ ସେସବୁ ପେଣ୍ଡୁକୁ ଗରମ ପାଣିରେ ପକାଇବାର ନିର୍ଦ୍ଦେଶ ଦେଲେ ଏବଂ ସେଥିରୁ ସୂତା ବାହାର କରିବାର ବ୍ୟବସ୍ଥା କଲେ । ସବୁ ପରିଚାରିକାମାନେ କାମରେ ଲାଗିରହିଲେ । ବହୁତ ଉତ୍ସାହରେ ରାଣୀ ସେମାନଙ୍କ କାମର ତଦାରଖ କରୁଥାନ୍ତି ।

ସୂର୍ଯ୍ୟାସ୍ତ ବେଳକୁ ବହୁତ ସୂତା ସଂଗ୍ରହ ହୋଇସାରିଥାଏ । ରାଣୀ ରାଜଧାନୀର ସବୁଠାରୁ ଖ୍ୟାତନାମା ବଢ଼େଇକୁ ଡକାଇ କହିଲେ,

Pro. K. C. Das





"ଦେଖ ଏ ସୂତା । ଏହି ସୂତାରୁ ଯେପରି ଲୁଗା ବୁଣା ହୋଇପାରିବ, ସେହି ଅନୁସାରେ ଏକ ତନ୍ତ ପ୍ରସ୍ତୁତ କରି ସକାଳ ସୁଦ୍ଧା ମୋତେ ଦେବାକୁ ହେବ ।"

ବଢ଼େଇ କାମରେ ଲାଗିଗଲା ।

ପରଦିନ ସମ୍ରାଟ୍ ମନ୍ତ୍ରୀ ଦୁଇଜଣଙ୍କୁ ଡକାଇ ପଚାରିଲେ, "କ'ଣ, ରାଣୀଙ୍କ ମନ ପରିବର୍ତ୍ତନ କରିବାର କିଛି ଉପାୟ ଭାବି ପାଇଲ ?"

"ଆଜ୍ଞା ! ବଗିଚାରେ କେତୋଟି ମୟୂର ରଖାଯାଉ । ସେମାନଙ୍କ ନୃତ୍ୟ ରାଣୀଙ୍କୁ ଆନନ୍ଦ ଦେବ ।" ଜଣେ ମନ୍ତ୍ରୀ କହିଲେ ।

"ବଗିଚାରେ ଗୋଟାଏ ସୁନ୍ଦର ସରୋବର ଖୋଳାଯାଉ । ରାଣୀ ଖୁସୀ ହେବେ ।" ଆଉ-ଜଣକ କହିଲେ ।

ସେତିକିବେଳେ ଜଣେ ସେବକ ସେଠାରେ ପହଞ୍ଚି ସମ୍ରାଟ୍‌ଙ୍କୁ କହିଲା, "ପ୍ରଭୁ ! ରାଣୀ କାହିଁକି ତାଙ୍କ କୋଠରିରୁ ବାହାରୁନାହାନ୍ତି !"

"ଏତେ ବେଳ ହେଲାଣି, ସେ ବାହାରୁ-ନାହାନ୍ତି ? ଏହା ତ ବଡ଼ ବିଚିତ୍ର କଥା !" ସମ୍ରାଟ୍ ଚିନ୍ତିତ ହୋଇ କହିଲେ ।

ରାଣୀଙ୍କ କୋଠରି ଭିତରକୁ ଗୋଟିଏ ଗୁପ୍ତ ପଥ ଥିଲା । ସମ୍ରାଟ୍ ସେହି ପଥରେ ଚୁପି ଚୁପି ଯାଇ କୋଠରି ଭିତରକୁ ଅନାଇଲେ । ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ରାଣୀ ତନ୍ତରେ ନିଜେ ଲୁଗା ବୁଣିଯାଉଛନ୍ତି ।

ସମ୍ରାଟ୍‌ଙ୍କ ଅଜ୍ଞାତସାରରେ ତାଙ୍କ ମୁହଁରୁ ବିସ୍ମୟସୂଚକ ଧ୍ୱନି ନିର୍ଗତ ହେବାରୁ ରାଣୀ ବୁଲିପଡ଼ି ଅନାଇଲେ । ରାଣୀଙ୍କ ମୁହଁରେ ବିଷାଦର ଚିହ୍ନ ନ ଥିଲା । ସେ ଖୁସୀ ଥିବାରୁ ଆହୁରି ସୁନ୍ଦର ଦିଶୁଥିଲେ ।

"ସମ୍ରାଟ୍ ! ମୋତେ କ୍ଷମା କରନ୍ତୁ । ଆପଣଙ୍କ ରାଣୀ ହିସାବରେ ମୋର ଏଭଳି କାମ କରିବା ଅସୁନ୍ଦର । ସେଥିପାଇଁ ଲୁଚିଇ ଲୁଗା ବୁଣୁଥିଲି । ମୋର ଉଦ୍ଦେଶ୍ୟ, ଏ ଅପୂର୍ବ ସୂତାରେ ତିଆରି ଲୁଗା ଆପଣଙ୍କୁ ଉପହାର ଦେବି । ମୁଁ ସର୍ବଦା ଉଦାସ ରହୁଛି ବୋଲି ଆପଣ ଦୁଃଖ ପାଇଛନ୍ତି ।

ବଦଳରେ ଏ ଉପହାର ଦେବାକୁ ମୁଁ ମନସ୍ଥ କରିଥିଲି ।" ରାଣୀ କହିଲେ ।

"ରାଣୀ, ତୁମେ ଖୁସୀ ଅଛ, ଏହାଠାରୁ ବଳି ଉପହାର ଆଉ କ'ଣ ହୋଇପାରେ ? କିନ୍ତୁ ଏ ସୂତା ପାଇଲ କେଉଁଠାରୁ ?" ସମ୍ରାଟ୍ ଚମତ୍କୃତ ହୋଇ ପଚାରିଲେ ।

ରାଣୀ ସେଇଠୁ ସବୁ କହିଲେ । ତା'ପରେ ସେ ସମ୍ରାଟ୍‌ଙ୍କଠାରୁ ଗୋଟିଏ ଉଦ୍ୟାନ ନେଇ ସେଥିରେ ସହସ୍ର ବୃକ୍ଷରେ ସେହି ପେଣ୍ଡୁ ତିଆରି କରୁଥିବା ପୋକଙ୍କୁ ପୋଷଣ କଲେ । ସେଥିରୁ ଯେଉଁ ବସ୍ତ୍ରମାନ ପ୍ରସ୍ତୁତ ହେଲା, ତାହାହିଁ ରେଶମ ବସ୍ତ୍ର ।

ତେଣିକି ରାଣୀ ସୀ ଆଉ କେବେ ମଧ୍ୟ ମନମାରି ରହିବାର ଦେଖାଗଲା ନାହିଁ । ସେ ରେଶମ ସୂତାର ନୂଆ ନୂଆ ବସ୍ତ୍ର ତିଆରି କରିବା, ସେସବୁ ସୂତାକୁ ନୂଆ ନୂଆ ରଙ୍ଗରେ ରଞ୍ଜିତ କରିବା ଇତ୍ୟାଦି କାମରେ ବ୍ୟାପୃତ ରହିଲେ । ରାଜା ରୁଷିଲେ କିଛି କାମ କରିବାର ସୁଯୋଗ ନ ଥିବାରୁ ରାଣୀ ସୁଖ ପାଉ ନ ଥିଲେ । ରେଶମ ଆବିଷ୍କାର କରିସାରି ତାହା କପରି ଉପଯୁକ୍ତ ଭାବରେ ବ୍ୟବହୃତ ହେବ, ଏଣିକି ସେହି ଦିଗରେ ମୁଣ୍ଡ ଖେଳାଉଥା'ନ୍ତି ରାଣୀ ।

କ୍ରମେ ରେଶମ ବସ୍ତ୍ର ସମ୍ରାଟ୍ ଓ ରାଣୀଙ୍କର ସବୁଠାରୁ ପ୍ରିୟ ପଦାର୍ଥ ରୂପେ ଆଦୃତ ହେଲା । ଯେତେବେଳେ ବହୁଳ ପରିମାଣରେ ବସ୍ତ୍ର ନିର୍ମିତ ହେଲା, ସେତେବେଳେ ଅମାତ୍ୟମାନେ ବି ସେ ବସ୍ତ୍ର ପାଇଲେ । କେତେବର୍ଷ ଭିତରେ ରେଶମ-ପୋକ ପୋଷଣ ଓ ରେଶମ ସୂତାରେ ବସ୍ତ୍ର ନିର୍ମାଣ ଗୋଟିଏ ବିଶେଷ ବ୍ୟବସାୟରେ ପରିଣତ ହେଲା । ଧୀରେ ଧୀରେ ଚୀନ୍ ବାହାରର ଦେଶମାନଙ୍କୁ ମଧ୍ୟ ସେ କଳା ବ୍ୟାପିଗଲା । ଆଜି ଯାଏ ଚୀନ୍‌ର ଲୋକେ ରେଶମ ବସ୍ତ୍ରକୁ ସେ ରାଣୀଙ୍କ ନାମ ଅନୁସାରେ "ସୀ" ବୋଲି ଅଭିହିତ କରିଥାନ୍ତି ।



## ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

### ପୁରସ୍କୃତ ପରିଚୟୋକ୍ତି ଫେବୃଆରୀ ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ





★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃଶ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଡିସେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକଙ୍କ ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲଡିଙ୍ଗସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଅକ୍ଟୋବର ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ଯୁଆଳିଆ ନଣ ବିକଟ ହସ,

ଦ୍ୱିତୀୟ ଫଟୋ : ଦେଖି, କୁନା ମୁଖ ଭୟେ ବିରସ ।

ପୁରସ୍କାର ବିଜୟିନୀ : କୁମାରୀ ଶାନ୍ତି ନନ୍ଦ, ପୁରୀ ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor : NAGI REDDI.



ସେ ଭାବେ ଶାନ୍ତ ଓ ସ୍ଥିର ଥିବା ଅଗସ୍ତ୍ୟ କ୍ରୁଦ୍ଧ ହୋଇ ଦେଲେ ଏହି ଅଭିଶାପ : ନହୁଷ ଯେତେବେଳେ ଏଡ଼େ ଅବିବେକୀ ଓ ଉଦ୍ଧତ ଭାବରେ ନିଜ ପାଦକୁ ବ୍ୟବହାର କରିଛନ୍ତି, ସେ ପାଦହୀନ କୌଣସି ଜୀବରେ ପରିଣତ ହେବା ଦରକାର । ସଙ୍ଗେ ସଙ୍ଗେ ସର୍ପରେ ପରିଣତ ହୋଇ ନହୁଷ ସ୍ୱର୍ଗରୁ ଖସିପଡ଼ିଲେ ।



ତେବେ କ୍ଷମାଶୀଳ ଅଗସ୍ତ୍ୟ କହିଲେ କି ଭବିଷ୍ୟତରେ ସେ ଜଣେ ମହାପୁରୁଷଙ୍କ ହସ୍ତକ୍ଷେପ ଫଳରେ ଶାପମୁକ୍ତ ହେବେ । ବହୁଦିନ ବିତିଗଲା । ପାଣ୍ଡବମାନେ ବନବାସ କରୁଥିବା କାଳରେ ଦିନେ ନହୁଷ-ସର୍ପ ଭୀମଙ୍କୁ ଗୁଡ଼ାଇ ଧରିଲା ।



ଯୁଧିଷ୍ଠିର ଘଟଣାସ୍ଥଳରେ ପହଞ୍ଚି ଭୀମଙ୍କୁ ପାଶମୁକ୍ତ କରିବା ନିମନ୍ତେ ସର୍ପରୂପୀ ନହୁଷଙ୍କୁ ନିର୍ଦ୍ଦେଶ ଦିଅନ୍ତେ ଯୁଧିଷ୍ଠିର ତାଙ୍କ ପ୍ରଶ୍ନର ଉତ୍ତର ଦେଲେ ସେ ତାହା କରିବେ ବୋଲି କହିଲେ । ଯୁଧିଷ୍ଠିର ପ୍ରଶ୍ନର ଯଥାର୍ଥ ଉତ୍ତର ଦେବାରୁ ନହୁଷ ଭୀମଙ୍କୁ ମୁକ୍ତ ଦେବା ସଙ୍ଗେ ସଙ୍ଗେ ନିଜେ ସର୍ପଦଶାରୁ ମୁକ୍ତି ଲାଭ କଲେ ।